# ସୋରାଜାରାଣୀ

( ଐତିହାସିକ ନାଟକ )

ନାଟ୍ୟକାର—

ମନ୍ତ୍ରୀ

ଅଶ୍ୱିନୀକୁମାର ଘୋଷ, ଏମ୍. ଏ.
ନାଟ୍ୟସମ୍ରାଟ, ନାଟ୍ୟବିଶାରଦ, ନାଟ୍ୟଭାରତୀ

ପ୍ରକାଶକ—
କଟକ ଟ୍ରେଡ଼ିଂ କମ୍ପାନୀ
କଟକ—୨

ତୃତୀୟ ସଂସ୍କରଣ—୧,୦୦୦
୧୯୬୨



~~ମୂଲ୍ୟ—ଦୁଇଟଙ୍କା ଚଉଷଠି ନୂଆପଇସା~~
୪.୫୦

ମୁଦ୍ରାକର—
ଶ୍ରୀ ଅଜୟକୁମାର ଘୋଷ
ଶ୍ରୀ ହରନାଥ ଦେହୁରୀ
କଟକ—୨

# ଭୂମିକା

ବରେଣ୍ୟ କବିଙ୍କର 'ନନ୍ଦକେଶରୀ'ରେ ଉତ୍କଳ-ସମ୍ରାଟଙ୍କର ଗୁଣ୍ଡିଚଙ୍କ କନ୍ୟା ନନ୍ଦିକାର ଚରିତ୍ର ଶାସନ ଇତିହାସର କଳଙ୍କ-ଓଢ଼ଣା ବୁକୁରେ ଏହା ଦାରୁଣ ଆଘାତ ଦିଏ ।

ସେତେବେଳର ପାରିପାର୍ଶ୍ୱିକ ଅବସ୍ଥା ବିଶ୍ଳେଷଣ କରି ମୁଁ ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଛି ତାହାହିଁ 'କେଶରୀ-ବଂଶ' ନାଟକରେ ସ୍ୱଜଗେମା ନନ୍ଦିକାର ପ୍ରକୃତ ରୂପ ବୋଲି ପାଠକ ଓ ଦର୍ଶକଙ୍କ ନିବେଦନ କରୁଛି । ଦେଶ ସଭାରେ ଜାତି ସଭାରେ ନନ୍ଦିକାର ତ୍ୟାଗ-ପୂତ-ଦାନ ପ୍ରକୃତରେ ଅତୁଳନୀୟ ।

ବିନୀତ
ଲେଖକ

# ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣ ।

## ପୁରୁଷ

| | |
|---|---|
| ସୁବର୍ଣ୍ଣକେଶରୀ | ଉତ୍କଳ ସମ୍ରାଟ |
| ବାସୁଦେବ | ଉତ୍କଳ ମନ୍ତ୍ରୀ |
| ବୀରେନ୍ଦ୍ର | ଉତ୍କଳ ସେନାପତି |
| ଗୌରଗଙ୍ଗ | କର୍ଣ୍ଣାଟ-ଅଧୀଶ୍ୱର |

ପାରିଷଦଗଣ, ରକ୍ଷୀ, ଦୂତ, ଦ୍ୱାରୀ, ଉତ୍କଳ ସୈନିକଗଣ, ଗୁପ୍ତଚର, କର୍ଣ୍ଣାଟ ସୈନିକଗଣ, କର୍ଣ୍ଣାଟ ସେନାପତି, କର୍ଣ୍ଣାଟ ମନ୍ତ୍ରୀ ଇତ୍ୟାଦି ।

## ସ୍ତ୍ରୀ

| | |
|---|---|
| ନନ୍ଦିକା | ସୁବର୍ଣ୍ଣକେଶରୀଙ୍କର କନ୍ୟା |
| ଶାରଦା | ବାସୁଦେବଙ୍କର କନ୍ୟା |
| ସୁଭଦ୍ରା | ଗୌରଗଙ୍ଗଙ୍କର ମାତା |
| ବୈଷ୍ଣବୀ | ଛଦ୍ମବେଶିନୀ ଶାରଦା |
| ଚମ୍ପା | ନନ୍ଦିକାର ସହଚରୀ |

ସଖୀଗଣ ଇତ୍ୟାଦି



## ପ୍ରଥମ ଦୃଶ୍ୟ

—ଓଡ଼ିଶାର ରାଜସଭା—

[ ନନ୍ଦକାର ଜନ୍ମଦିନ ଉପଲକ୍ଷେ ରାଜକାର୍ଯ୍ୟ ବନ୍ଦଥିବାରୁ କେତେକ ଜଣ ରାଜାନୁଗ୍ରହପ୍ରାର୍ଥୀ ଚାଟୁକାରଙ୍କ ସହିତ ମହାରାଜ ସୁବର୍ଣ୍ଣକେଶରୀ ଆସୀନ ]

ସୁବର୍ଣ୍ଣ—ଆଜି ମୋର କନ୍ୟାର ଜନ୍ମଦିନ, ଆଜି ମହୋତ୍ସବର ଦିନ ।

୧ମଚୋପଦାର—ଏହି ଯେ ସ୍ତୋତ୍ରଗଣ ମହୋତ୍ସବରେ ମହାରାଜାଙ୍କ ସ୍ତୁତି ଗୀତ ଗାଇ ଗାଇ ଏଣେ ଆସୁଛନ୍ତି ।

—ଗୀତ—

(ଆଜି) କେଶରୀ କୁଳ ମଣ୍ଡନ
କେଶରୀ କୁଳଭୂଷଣ
ଉଠି କୁଳଗଗନ
ଭାରତେ ସୁଖ କାରଣ ।

ଗାଅ ହେ ଜୟଗାନ, ବନ୍ଦ ହେ ଶ୍ରୀଚରଣ ॥
ଦିବ୍ୟଜ୍ୟୋତି ଜାଲେ ହେର, ପଳାୟିତ ଅନ୍ଧକାର—
ଶ୍ୟାମଳିତ ଅନୁର୍ବର, ଫଳ ଫୁଲେ ପୂର୍ଣ୍ଣାଗାର !
ସେହୁ ହେ ଧାନ ଧାରଣ, ସେହୁ ହେ ଭୟ ବାରଣ
ଗାଅ ହେ ଜୟଗାନ, ବନ୍ଦ ହେ ଶ୍ରୀଚରଣ ॥
ବୀରଦର୍ପ ଦାପେ ପୁଣ ନିର୍ଜିତ ଅରାତିଗଣ;
ଦୂରିତ ତାପ କାରଣ, ଆନନ୍ଦେ ଭରା ଭୁବନ ।
ସେହୁ ହେ ଶିଷ୍ଟ ପାଳନ, ସେହୁ ହେ ଦୁଷ୍ଟ ଦମନ
ଗାଅ ହେ ଜୟଗାନ, ବନ୍ଦ ହେ ଶ୍ରୀଚରଣ ॥

ତୋଷା—ବନ୍ଦ କଲ୍ କାହିଁକି ? ଆହୁରି ଗାଅ ।

ସୁବର୍ଣ୍ଣ—ଥାଉ ଥାଉ—ଏ' ସବୁ ମୌଖିକ—ଏ'ସବୁ ଭଣ୍ଡାମି ।

୧-ତୋଷା—ଅନ୍ୟ କାହାରି ପାଖରେ ହୋଇପାରେ ମଣିମା ।

୨-ତୋଷା—ଆମ୍ଭ ନିକଟରେ ଯେ ମଣିମା କି ଅମୂଲ୍ୟ-ନିଧି—

୧-ତୋଷା—ସହସ୍ର ଜିହ୍ୱାରେ ମଧ୍ୟ ବାସୁକୀ ବର୍ଣ୍ଣନା କରିବାକୁ ଅକ୍ଷମ !

୨-ତୋଷା—ବର୍ଣ୍ଣନା କରିବ କିଏ ଭାଇ ? କଳ୍ପନାରେ ଆଣିବା ଯେ ଏକାବେଳକେ ଅସମ୍ଭବ ।

ସୁବର୍ଣ୍ଣ—(ସସ୍ମିତେ) ପ୍ରକୃତରେ ତୁମ୍ଭେମାନେ ମୋତେ ଏତେ ଭଲପାଅ ?

୧-ତୋଷା—ମଣିମା ! ଏ' ପରି ପ୍ରଶ୍ନ ପୁଣି ଆଜ ଶୁଣିବାକୁ ହେଲା !

୨-ତୋଷା—ହରି ହରଙ୍କ ମଧ୍ୟରେ ପ୍ରଭେଦ ଘଟିପାରେ—ମାତ୍ର ମଣିମା ଆଉ ଏ' ଅଧୀନମାନଙ୍କ ମଧ୍ୟରେ ପ୍ରଭେଦ ଘଟିବା ଏକାବେଳକେ ଅସମ୍ଭବ ।

୧-ତୋଷା—ସୃଷ୍ଟି ପ୍ରଳୟ ହୋଇଗଲେ ମଧ୍ୟ ଅସମ୍ଭବ ।

ସୁବର୍ଣ୍ଣ—ଅସମ୍ଭବ—ଅସମ୍ଭବ, ଗୃହଦ୍ୱାରଗଣ । ମୋର ନାଯିକା ଛଡ଼ା ଅନ୍ୟ କାହାର ପକ୍ଷେ ଏତେଦୂର ଭଲ ପାଇବା ଏକାବେଳକେ ଅସମ୍ଭବ ।

ତୋଷା—ଡା'—ଡା'— ( ମୁଣ୍ଡ କୁଣ୍ଡାଇ କୁଣ୍ଡାଇ )

( ବାସୁଦେବଙ୍କ ପ୍ରବେଶ )

ବାସୁଦେବ—( ପ୍ରଣାମ କରି ) ମହାରାଜ ।

ସୁବର୍ଣ୍ଣ—(ସସ୍ମିତେ) ଅଚ୍ଛା, ମନ୍ତ୍ରି । ତୁମ୍ଭେ କହ ମୋତେ କେତେଦୂର ଭଲ ପାଅ ?

ବାସୁଦେବ—ବୁଝିପାରିଲି ନାହିଁ, ମହାରାଜ ।

ସୁବର୍ଣ୍ଣ—ତୁମ୍ଭେ ମୋତେ କେତେଦୂର ଭଲପାଅ ?

ବାସୁଦେବ—ଏ' କି ପ୍ରଶ୍ନ ମହାରାଜ ?

ସୁବର୍ଣ୍ଣ—କାହିଁକି ? ଏଥିରେ ଆଶ୍ଚର୍ଯ୍ୟର ବିଷୟ କଣ ଅଛି ?

ବାସୁଦେବ—(ନୀରବ)

ସୁବର୍ଣ୍ଣ—ମୋତେ ଭଲ ପାଇବା କ'ଣ ଆଶ୍ଚର୍ଯ୍ୟର ବିଷୟ ?

ବାସୁଦେବ—ଏ' ବିଷୟରେ ପ୍ରଶ୍ନକରିବା ଯେ ଆଶ୍ଚର୍ଯ୍ୟର ବିଷୟ, ମହାରାଜ ।

୧-ତୋଷା—କେବ ନାହିଁ, ମହାରାଜ । ଯେ ଆଦୌ ଭଲ ନ ପାଏ, କିମ୍ବା ସାମାନ୍ୟ ଭଲ ପାଏ, ତା' ପକ୍ଷେ ଏ'ପରି ପ୍ରଶ୍ନ ଆଶ୍ଚର୍ଯ୍ୟର ବିଷୟ ହେବ ନାହିଁ ?

ବାସୁଦେବ—(ପ୍ରଥମ ପାରିଷଦପ୍ରତି ଭ୍ରୂକୁଞ୍ଚିତ କରି) ମହାରାଜ । ସେ ପ୍ରଶ୍ନର ପରେ ମୀମାଂସା ହେବ—ଆଜ୍ଞା ଶୁଭ କ୍ଷଣରେ ଗୋଟିଏ ଶୁଭ ସମ୍ବାଦ ଆଗେ ଶ୍ରବଣ କରନ୍ତୁ ।

ସୁବର୍ଣ୍ଣ—କି ଶୁଭ ସମ୍ବାଦ ?

ବାସୁଦେବ—କର୍ଣ୍ଣାଟାଧୀଶ୍ୱର ଶ୍ରୀବଲ୍ଲଭଦେବ ଦୂତ ପ୍ରେରଣ କରିଅଛନ୍ତି ।

ସୁବର୍ଣ୍ଣ—(ସ୍ୱଗତରେ) କ'ଣ ଯୁଦ୍ଧାର୍ଥ ? ଓଡ଼ିଶା ଭ୍ରମଣରୁ ଫେରି ଯାଇ ଏ'ଦେଶ ପ୍ରତି ଲୋଭ ବଳିଲା କି ? ଯାହା ହେଉ ଭାରି ଖୁସି ସମ୍ବାଦ, ମନ୍ତ୍ରି—ସେ ଜାଣିଯା'ନ୍ତୁ ଯେ ସୁବର୍ଣ୍ଣ କେଶରୀ ବୃଦ୍ଧ ହେଲେ ମଧ୍ୟ କେଶରୀ ।

ଚୋପା—ମଣିମା ! ନିଶ୍ଚୟ ସେ ବାତୁଳ !

ବାସୁଦେବ—ଆପଣମାନେ ହିଁ କିଏ ଭ୍ରମ ହେଉଛନ୍ତି, ମହାଶୟ ଗଣ ! ମହାରାଜ ! ଏ' ଯୁଦ୍ଧାର୍ଥ ଦୂତପ୍ରେରଣ ନୁହେଁ ।

ସୁବର୍ଣ୍ଣ—ତେବେ କଣ ନିବାହାର୍ଥ ।

ବାସୁଦେବ—ଆଜ୍ଞା ମହାରାଜ, ବିବାହାର୍ଥ ?

ସୁବର୍ଣ୍ଣ—ବିବାହାର୍ଥ ! (ହାସ୍ୟକରିକା)

ଚୋପା—ବିବାହାର୍ଥ ? ( ହାସ୍ୟକରିବା )

ସୁବର୍ଣ୍ଣ—ତାଙ୍କର କଣ ଏପରି କେହି ଆତ୍ମୀୟା ଅଛନ୍ତି, ଯାହାଙ୍କୁ ଅଦ୍ୟୌ ପାତ୍ର ମିଳୁ ନାହାନ୍ତି ? ନଚେତ୍ ଏ ବୃଦ୍ଧବୟସରେ ମୋତେ କନ୍ୟାଦେବାକୁ ମନ ବଳିଲା କିପରି ? ସେ କାହୁଁ ଶୁଣିଲେ ଯେ ଅଜକୁ ଷୋଡ଼ଶ ବର୍ଷ ସ୍ତ୍ରୀବିୟୋଗାନ୍ତେ, ପୁନର୍ବାର ଦାରପରିଗ୍ରହ କରିବାକୁ ମୁଁ ଉଦ୍ୟତ ?

୧ମ-ଚୋପା—ମଣିମା ! ଆମ୍ଭ ଏ'ପରି କ'ଣ ବୃଦ୍ଧ ହୋଇଛନ୍ତି ?

୨ୟ-ଚୋପା—ଅମ ସାହିର ଅଭିନନ୍ଦ, ବୁଢ଼ୀ ମଲାପରେ ଯେଉଁ ବୟସରେ ବିବାହକଲା, ତା'ଦେଖିବାକୁ ଗଲେ ତ ଆମ୍ଭ ନିହାତି ପିଲା !

୧ମ-ଚୋପା—ଅରେ ଭାଇ, ଆମ୍ଭଙ୍କ ବୟସରେ ଲୋକେ ତ ବିବାହ କରନାହାନ୍ତି ।

ସୁବର୍ଣ୍ଣ—ଚୁପ୍ କର, ଚୋପାମଦଙ୍କାରଗଣ ! ବୃଦ୍ଧ ମନ୍ତ୍ରି, ବିବାହ ବୟସ ଥାଉ ବା ନ ଥାଉ, ମୋର ପୁନର୍ବାର ବିବାହ କରିବାର କି ପ୍ରୟୋଜନ ? ଇନ୍ଦ୍ରିୟ ଲାଳସା ତୃପ୍ତି ନିମନ୍ତେ ?—ସେ ଲାଳସା ଯା'ର

ଯୌବନରେ ସୁଦ୍ଧା ନ ଥିଲା, ଏ' ବୟସରେ ତାହା ଆସିବ ? ସନ୍ତାନ ନିମନ୍ତେ ? ସେ ଅଜ୍ଞାତ ଈଶ୍ୱର ପୂର୍ଣ୍ଣ କରିଛନ୍ତି—ପୁଣି ଏପରି ଗୋଟିଏ ରତ୍ନ ଦେଇଅଛନ୍ତି, ଯା'ଙ୍କ ମୋପଟେ ଉଦାର ଆଲୋକ—ନିଶାର ଶାନ୍ତି—ପିଣ୍ଡର ପ୍ରାଣ ହୋଇ ରହିଛି ।

ବାସୁଦେବ—ଏ'ପରି ଅମୂଲ୍ୟ ରତ୍ନ—ପ୍ରାଣାଧିକା କନ୍ୟାର ତୃପ୍ତି ସାଧନ କି ପିତାର କର୍ତ୍ତବ୍ୟ ନୁହେଁ, ମହାରାଜ ?

ସୁବର୍ଣ୍ଣ—ନିଜର ପ୍ରାଣ ବଳିଦାନରେ ମଧ୍ୟ କର୍ତ୍ତବ୍ୟ—ତୁହ, ମନ୍ତ୍ରି । ନନ୍ଦିନୀ ମୋର କେଉଁ ବିଷୟରେ ଅତୃପ୍ତା—ତାର ଯେ ପୁଣି ଅଜ ଜନ୍ମ ଦିନ—ସେ କଣ ଚାହେଁ ? ରାଜ୍ୟମୂଲ୍ୟରେ ଯଦ୍ୟପି ତାହା କିଣିବାକୁ ହୁଏ, ଏହିକ୍ଷଣି ଆଣି ଯୋଗାଅ ।

ବାସୁଦେବ—ମହାରାଜ ! ସେ ଅତୀବ ଦୁର୍ଲ୍ଲଭ ପଦାର୍ଥ !

ସୁବର୍ଣ୍ଣ—ଅତୀବ ଦୁର୍ଲ୍ଲଭ !

ବାସୁଦେବ—ମାତ୍ର ଈଶ୍ୱରଙ୍କ କୃପାରୁ ବର୍ତ୍ତମାନ ଅତୀବ ସୁଲଭ ହୋଇଛି ।

ସୁବର୍ଣ୍ଣ—ମୋର ତେବେ ଅତୀବ ସୌଭାଗ୍ୟ—ଯାଅ ମନ୍ତ୍ରି, ଶୀଘ୍ର ନେଇଆସ, ନଚେତ୍ ନିଜେ ମାଇଁ ନେଇ ଆସିବ ।

ବାସୁଦେବ—କୌଣସି କ୍ଳେଶର ପ୍ରୟୋଜନ ନାହିଁ,ମହାରାଜ—ଏହି ଦ୍ୱାରଦେଶରେହିଁ ଉପସ୍ଥିତ ଅଛି ।

ସୁବର୍ଣ୍ଣ—ଦ୍ୱାର ଦେଶରେ ଉପସ୍ଥିତ ଅଛି ! ଭଲରକୁ ତେବେ ଏ ପର୍ଯ୍ୟନ୍ତ ନେଇ ଆସିନାହଁ କାହିଁକି ? ( ବାସୁଦେବଙ୍କ ପ୍ରସ୍ଥାନ ) ଏପରି କି ସେ ଦୁର୍ଲ୍ଲଭ ପଦାର୍ଥ, ପାରିଷଦଗଣ ?

୧ମ-ତୋଷା—କେଜାଣି ମହିମା, ଏ'ପରି କି ସେ ଦୁର୍ଲ୍ଲଭ ପଦାର୍ଥ ? ଅମ ରାଜ୍ୟରେ କଣ ନାହିଁ ? ଯେଉଁ ହୀରାର ପାହାଡ଼ ସବୁ ଅଛି—

ସୁବର୍ଣ୍ଣ—ହୀରାର ପାହାଡ଼ !—ମୂର୍ଖ—( ହାସ୍ୟ କରିବା )

୨-ଚୋପଦାର—ମହିମା । ସେ ନିହାତି ମୂର୍ଖ । ହୀରାର ଗଛକୁ କହୁଛି—

ସୁବର୍ଣ୍ଣ—ତୁମେ ଦେଖୁଛ ଗଜମୂର୍ଖ—ହୀରାର ଗଛ ?

ଉଭୟେ—ମହାରାଜ ! ଅମ୍ଭେମାନେ ମୂର୍ଖଲୋକ, ହୀରାଫିରା କଣ ଜାଣୁ ?

( ବାସୁଦେବଙ୍କ ପୁନଃ ପ୍ରବେଶ )

ସୁବର୍ଣ୍ଣ—କାହିଁ ସେ ଦୁର୍ଲ୍ଲଭ ପଦାର୍ଥ, ମନ୍ତ୍ରି ?

ବାସୁଦେବ—(ଶଙ୍ଖ ଦେଖାଇ ) ଏହୁ ସେ ଦୁର୍ଲ୍ଲଭ ପଦାର୍ଥ, ମହାରାଜ !

ସୁବର୍ଣ୍ଣ—ଏ' ଯେ ଗୋଟିଏ ପ୍ରସ୍ତରଖଣ୍ଡ ?

ବାସୁଦେବ—କିନ୍ତୁ ଦୁର୍ଲ୍ଲଭ ପଦାର୍ଥ, ମହାରାଜ ।

ସୁବର୍ଣ୍ଣ—ଦେଖେଁ ( ହାତରେ ନେଇ ଦେଖି ଦେଖି ) ଏ' ଯେ ଶ୍ରୀରଙ୍ଗଙ୍କ ପ୍ରସ୍ତରଖଣ୍ଡ ।

ବାସୁଦେବ—ସୁତରାଂ ଅତୀବ ଦୁର୍ଲ୍ଲଭ ପଦାର୍ଥ, ମହାରାଜ ।

ସୁବର୍ଣ୍ଣ—( ନିକ୍ଷେପ କରି ) ମନ୍ତ୍ରି ! ଏ ପଦାର୍ଥ କଦାପି ମୋର କନ୍ୟାର ଆକାଙ୍‌କ୍ଷିତ ହୋଇ ନ ପାରେ ।

ବାସୁଦେବ—ଖୁବ ଆକାଙ୍‌କ୍ଷିତ ମହାରାଜ ! ପୁଣି ଅତୀବ ଆବଶ୍ୟକ—ଥରେ ଭାବି ଦେଖନ୍ତୁ, ମହାରାଜ !

ସୁବର୍ଣ୍ଣ—ଭାବି ଦେଖିବି କ'ଣ ମନ୍ତ୍ରି ? ମୋର କନକଲତାର ଯେ ମୁହିଁ ଜନ୍ମଦାତା !

ବାସୁଦେବ—ସେଥିପାଇଁ କହୁଛି, ମହାରାଜ ! ତାଙ୍କର ଲକ୍ଷ୍ୟ ସ୍ଥଳକୁ ତାଙ୍କୁ ପହଞ୍ଚାଇ ଦିଅନ୍ତୁ ।

ସୁବର୍ଣ୍ଣ—ଲକ୍ଷ୍ୟସ୍ଥଳ ! ତାର ଲକ୍ଷ୍ୟସ୍ଥଳ ମୁହିଁ ଛଡ଼ା ଅନ୍ୟ କିଏ ହୋଇ ପାରେ ?

ବାସୁଦେବ—ଜନ୍ମସ୍ଥାନକୁ ଲକ୍ଷ୍ୟକରି, ଲତା କେବେ ଧାଏଁ ନାହିଁ, ମହାରାଜ !

ସୁବର୍ଣ୍ଣ—ତେବେ କ'ଣ ଧାଏଁ ଜନ୍ମଜ ଭାବେ ବିପରୀତ ଦିଗକୁ ଲକ୍ଷ୍ୟକର ?

ବାସୁଦେବ—ଆଜ୍ଞା,ମହାରାଜ । ଜନ୍ମଜ ଭାବେ ବିପରୀତ ଦିଗରୁ ସହକାର ତତ୍ତ୍ୱକୁ ଲକ୍ଷ୍ୟକର ।

ସୁବର୍ଣ୍ଣ—ମାତ୍ର ମୋର ଲତାପକ୍ଷେ ଏହା ଅସମ୍ଭବ !

ବାସୁ—ତେବେ ଯେ ପ୍ରକୃତିର ନିୟମ ଅସମ୍ଭବ ହେବ, ମହାରାଜ ।

ସୁବର୍ଣ୍ଣ—ମୋର ଲତା ପକ୍ଷେ ଏହାହିଁ ବିଶେଷତ୍ୱ, ମନ୍ତ୍ରି ।

ବାସୁ—ଅସମ୍ଭବ ।

ସୁବର୍ଣ୍ଣ—ସମ୍ଭବ ।

ପାରିଷଦ—ନିଶ୍ଚୟ ସମ୍ଭବ !

ବାସୁ—ତେବେ ଥରେ ପରୀକ୍ଷାକରି ଦେଖନ୍ତୁ, ମହାରାଜ—

ସୁବର୍ଣ୍ଣ—ପରୀକ୍ଷା । ମୋର କନ୍ୟାକୁ ମୁଁ ପରୀକ୍ଷା କରିବି । ମୁଁ ଯେ ଦର୍ପଣରେ ଦେଖିଲା ଭଳି ତାର ଅଭ୍ୟନ୍ତର ଦେଖି ପାରୁଛି ।

ବାସୁ—ଅନୁଗ୍ରହ ପୂର୍ବକ ଥରେ ଭଲ କରି ଦେଖନ୍ତୁ ।

ସୁବର୍ଣ୍ଣ—ମନ୍ତ୍ରି । ତୁମ୍ଭେ ଜନ୍ମଦାତା ହୋଇ,ଏ'ପରି କଥା କହୁଛ ? ସନ୍ତାନ ପ୍ରତି ସନ୍ଦେହ କରିବ ? ପିତା ହୋଇ ପିତୃ-କନ୍ୟା ମଧ୍ୟରେ ଯେଉଁ ସ୍ୱର୍ଗୀୟ ମାଧୁରୀଟିକ ଅଛି, ତାହା କ'ଣ ଥରେ ହେଲେ କେବେ ଏ ପର୍ଯ୍ୟନ୍ତ ଆସ୍ୱାଦନ କରିନାହଁ ? ହାୟ । ହାୟ । କାହିଁକି ଭିନ୍ନ ନାହିଁ ? ସମସ୍ତେ କଣ ପାରନ୍ତି ନାହିଁ ? ( ଭାବ ) କିପରି ପାରିବେ ? ଏ' ସଂସାରରେ ତେବେ ଜଣେ ଧନୀ, ଜଣେ ଦରିଦ୍ର ହୁଅନ୍ତି କାହିଁକି ? ଜଣେ ସୁଖୀ, ଜଣେ ଦୁଃଖୀ ହୁଅନ୍ତି କାହିଁକି ? ମୋର ଗୋଟିଏ ମହାଭ୍ରମ ଆଜ ଦୂର ହୋଇଗଲା—ମୋର ଧାରଣା ଥିଲା, ସବୁ ପିତା ମୋ' ପରି ସୁଖୀ—କିନ୍ତୁ ଦେଖୁଛି,ଏ' ସୌଭାଗ୍ୟ ସମସ୍ତଙ୍କ ଭାଗ୍ୟରେ ଘଟେ ନାହିଁ ।

ବାସୁଦେବ—ମହାରାଜ ! ଥରେ ଅନ୍ତର୍ବାଷ୍ପ ତ୍ୟାଗକର—

ସୁବର୍ଣ୍ଣ—ଆଜ୍ଞ ମନ୍ତି ! ଯେଉଁ ନିର୍ମଳ ପ୍ରେମ-ସ୍ରୋତରେ ଆମ୍ଭେ ବୁଡ଼ିଛି ପିତୃ-କନ୍ୟା ମହାନନ୍ଦରେ ବିମଳ ସୁଧାପାନ କରୁଁ କରୁଁ ଦାର୍ ବାଦର୍ ଜ୍ଞାନଶୂନ୍ୟ ହୋଇ ଏକବାର ଭାସି ଯାଉଛୁଁ—ତୁମ୍ଭେ ଏ'ପର କଳଙ୍କମୟ ପ୍ରଶ୍ନ ଦ୍ୱାରା ତାହା ଆବିଳ କର ନାଅନାହୁଁ—ତୁମ୍ଭର ସେହି ଲକ୍ଷ୍ୟୀକୃତ ପର୍ବତ ତୁଲ୍ୟ ଭୀଷଣ ପ୍ରସ୍ତାବ ଦ୍ୱାରା ପରସ୍ପରକୁ ଭିନ୍ନ ଭିନ୍ନ କର ଦିଅ ନାହିଁ ।

ବାସୁଦେବ—ମହାରାଜ ! ଥରେ ରାଜ୍ୟର ଦୁର୍ଦ୍ଦଶା—

ସୁବର୍ଣ୍ଣ—ତୁନ ହୁଅ ମନ୍ତି ! ତୁମ୍ଭେ ଯେ କି ପ୍ରାଣସ୍ପର୍ଶିଶେଳା-ଘାତ କରୁଛ ତାହା କଣ ବୁଝିପାରୁ ନାହିଁ ? ମନେ କରୁଛ, ତୁମେ ଦୂରେ ବେଳାରେ ଠିଆହୋଇ କେବଳ ଗୋଟିଏ ପ୍ରଶ୍ନ କରୁଛ, ମାତ୍ର ପ୍ରଶ୍ନୋଚ୍ଚାରଣରେ ଧୀରପବନରେ ଯେଉଁ ସ୍ପନ୍ଦନଟିକ ଜାତ ହେଉଛି, ତାହା ଅଭ୍ୟନ୍ତରଣ ବହୁ ବାଧା ବିଘ୍ନ ସତ୍ତ୍ୱେ ମୋର ହୃଦୟକୁ ଯେ କି ଦାରୁଣାଘାତ କରୁଛି, ତାହା କଣ ବୁଝି ପାରୁ ନାହିଁ ?—ଥରେ ହସ୍ତାର୍ପଣ କର ( ମନ୍ତିର ହସ୍ତକୁ ବୁକୁରେ ଦେଇ ) ବୁଝିପାରିବ—ତୁମ୍ଭର ସର୍ବାଙ୍ଗ କପର ଭୂମିକମ୍ପ ତୁଲ୍ୟ କମ୍ପି ଉଠିବ—ତୁମ୍ଭର ହୃଦୟ କପର ଚପଳା ତୁଲ୍ୟ ଚମକ ଉଠିବ ।

ବାସୁଦେବ—ମହାରାଜ ! ମହାରାଜ ! ମୀତକଠୋର ଦାସକୁ କ୍ଷମା କରନ୍ତୁ ।

ସୁବର୍ଣ୍ଣ—ଓଃ ! ହୃଦୟରେ କି ଝଟିକା ପ୍ରବାହିତ ହୋଇ-ଯାଉଛି—ସମୁଦ୍ରରେ କି ଉତ୍ତାଳ ତରଙ୍ଗମାଳା ଗର୍ଜି ଉଠୁଛି—ଆଉ ରହାନାହିଁ—ଆଉ ରକ୍ଷାନାହିଁ !—( ଅଶ୍ରୁ ସମ୍ବରଣ କରି ) ଏଁ

ମୁଁ ଚିନ୍ତା କରୁଛୁ ?—ମୋର କନ୍ୟାର ଯେ ଅଜ୍ଞ ଜନ୍ମଦିନ—ଏ' ଆନନ୍ଦ ଦିନରେ ଏପରି ଶବ୍ଦନନ୍ଦଭାବ ପୋଷଣ କରିବା କି ଉଚିତ ? ନନ୍ଦିକା ! ନନ୍ଦିକା ! ପ୍ରାଣାଧିକା କନ୍ୟା ମୋର ! (ବେଗେ ପ୍ରସ୍ଥାନ)

୧ମ ଚୋ—ଓଃ ! ମନ୍ତ୍ରୀବୁଢ଼ା ଅଜ କି ଅଶାଃଠାଏ ମାଟିକର ଦେଲା ।

୨ୟ-ଚୋ—ଗ୍ଟଲ ହେ ଶୀଘ୍ର, ନ ହେଲେ ଗାଳ ଗୁଡ଼ାଏ ପୃଷ୍ଠି ଲାଭ ହେବ ।

( ଉଭୟଙ୍କର ପ୍ରସ୍ଥାନ )

ବାସୁଦେବ—ଏତେଦିନେ ଯାହା ମନେ ମନେ ପାଞ୍ଚୁଥିଲି, ସୌଭାଗ୍ୟକୁ ତାହା ଅଜ କାର୍ଯ୍ୟରେ ପରିଣତ ହୋଇଛୁ—ମାତ୍ର, ରାଜାଙ୍କର ଏପରି ଖିଆଲକୁ ଉପାୟ କଣ ? ଦୂତକୁ ବର୍ତ୍ତମାନ କା ସମ୍ବାଦ ଦେଇ ବିଦାୟ କରୁଛି—ହାତର ଲକ୍ଷ୍ମୀ ସିନା ଗୋଡ଼ରେ ଠେଲି ଦିଅଯିବ—ନା ବାସୁଦେବ ମନ୍ତ୍ରୀ ଥାଉଁ ଥାଉଁ ତାହା କଦାପି ଘଟିବ ନାହିଁ । ( ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

—ଉଦ୍ୟାନ—

( ନନ୍ଦିକାର ଧୀରେ ଧୀରେ ପ୍ରବେଶ )

ନନ୍ଦିକା—ଅଛି ସବୁ ମୋର କଳ୍ପନା—କିନ୍ତୁ କାହିଁ ସେ ଆନନ୍ଦ ? ଆଗେ ଏହି ଉଦ୍ୟାନରେ ମୁଁ କେତେ ଉଲ୍ଲାସ ଅନୁଭବ କରୁ ନଥିଲି ? ପ୍ରତ୍ୟେକ ଥର ମନେ ହେଉଥାଏ, ଏହି ଉଦ୍ୟାନଟି ଯେପରି ନୂତନ ନୂତନ ବେଶ ଧାରଣ କରି, ମୋ ସମ୍ମୁଖରେ ନୂତନ ନୂତନ ଭଙ୍ଗିରେ ନୃତ୍ୟ କରୁଛି—କୋକିଳମାନେ ଯେପରି ନୂତନ ନୂତନ କଣ୍ଠରେ ନୂତନ ନୂତନ ଗାନ ଗାଉଛନ୍ତି କରି ମୋ କର୍ଣ୍ଣରେ ଅପୂର୍ବ ସୁଧା ଢାଳୁଛନ୍ତି—ସଖୀମାନେ ଯେପରି ନୂତନ ନୂତନ ହାସ୍ୟ କୌତୁକ ଓ ନୃତ୍ୟ ଗୀତରେ ମୋତେ କେଉଁ ଆନନ୍ଦମୟ ଭୁବନକୁ ନେଇ ଯାଉଛନ୍ତି—କିନ୍ତୁ ଏଥର କାହିଁ ସେ ଭାବ ? ସେହି ଉଦ୍ୟାନ —ସେହି କୋକିଳ—ସେହି ସଖୀମାନେ ଅଛନ୍ତି, ମାତ୍ର ସମସ୍ତେ ଯେପରି ପ୍ରାଣହୀନ—ସମସ୍ତ ଯେପରି ପୁରାତନ ।

( ଶାରଦାର ଗୋଟିଏ ଛବି ହସ୍ତରେ ପ୍ରବେଶ )

ଶାରଦା—ଗୋଟିଏ ନୂତନ ଜିନିଷ ଆଣିଛି ସହି ।

ନନ୍ଦିକା—( ଦେଖୁଁ ଦେଖୁଁ ) ଏ' ଚିତ୍ରପଟ କାହୁଁ ଆଣିଲୁ ସହି ?

ଶାରଦା—ବାପା ଦେଇ ପଠାଇଛନ୍ତି—ଏ'ଥର ଏହାହିଁ ତୋ'ର କଳ୍ପନାର ଭେଟି—ଏକାବେଳକେ ଠିକଣାରୁ ଆଣିଛି ସହି ! ଏହାକି ଗୋଟାଏ ନୂତନ ଜିନିଷ ନୁହେଁ ?

ନନ୍ଦିକା—( ଚିତ୍ରପଟ ଦେଖୁଁ ଦେଖୁଁ ସ୍ୱଗତ ) ପ୍ରକୃତରେ ଏହାହିଁ ଏଥର ନୂତନ ଜିନିଷ । ହାୟ ! କେତେ ଯୁଗ ପରେ ପ୍ରତକୃତରେ

ଆଜି ସମସ୍ତ ମୂର୍ତ୍ତି ଦେଖୁଛି—ପ୍ରକୃତରେ କେତେ ବୈଚିତ୍ର୍ୟ—ସତେକି ଏପରି ସୌନ୍ଦର୍ଯ୍ୟ ହେବ ?

ଶାରଦା—ଅଜ ଶନ୍ତ୍ରା କାହିଁକି ସଜ୍ଜ ? କୁତୁହଳ ନିମନ୍ତଣ ଘେନ ଅସିଲଣି !

ନନ୍ଦକା—(ନିରୁତ୍ତର ହୋଇ ଚଉପଟ ଦେଖୁଥିବା )

ଶାରଦା—କି ? ଚୋରଟାକୁ ମନ ପ୍ରାଣ ଏକାବେଳକେ ଢାଳି ଦେଲୁ ଯେ ?

ନନ୍ଦକା—ଜାଣି ଶୁଣି କି ଚୋରକୁ କେହି ଧନରତ୍ନ ଢାଳି ଦିଏ

ଶାରଦା—ତେବେ କଣ ଚୋର ଚୋରି କରି ନେଇଛି ?

ନନ୍ଦକା—ଚୋରର କାମ ଚୋରି କରିଛି ।

ଶାରଦା—ତେବେ ରଜାର କାମ ରଜା କରୁ ନାହିଁ ?

ନନ୍ଦକା—କୋଟାଲର କାମ ଆଗେ କୋଟାଲ କରି ସାରୁ କ ?

ଶାରଦା—ମନେ କରୁଛୁ କ'ଣ ଚୋରଟା ଖୁବ ଗୁଲ୍କ ?

ନନ୍ଦକା—ମୋର କୋଟାଲର ପରି ଠିକଏ ମୋଟା ବୁଦ୍ଧି ।

ଶାରଦା—ହଁ, ଏହିକ୍ଷଣି ଯେବେ ଧରି ଅଣେଁ ?

ନନ୍ଦକା—( ଖୁନ୍ଦାମାରି ) ତେବେ ଏହି ବକ୍‌ସିଶ୍ ।

( ସଖିମାନଙ୍କର ଗୀତ ଗାଇ ୨ ପ୍ରବେଶ । )

—ଗୀତ—

ଦିଅ ସବୁ ଯାହା ଇଚ୍ଛା ଦିଅ ପୁରସ୍କାର,
ହାତ ପାତି ନେବା ହସି ନ କରି ବଗୁର ॥
ତୁମ ସୁଖେ ସୁଖୀ ସିନା, ତୁମ ଦୁଃଖେ ଦୁଃଖୀ,
ତୁମ ଭାବେ ମଜ୍ଜି ଥାଉଁ ସଦା ବଧୂମୁଖୀ ।
ନାହିଁ ଆଶା, ପ୍ରତି ଆଶା ବିନା ତବ ପ୍ରେମ ଆଶା,
ସେହି ଆଶେ ଅଛୁଁ ଚାହିଁ ସେବା ଅନିର୍ବାର !

ସର୍ବଜଣ—ଠିକ୍ ହୋଇଛି, ଠିକ୍ ହୋଇଛି, ହାତେ ହାତେ ଫଳ ପାଇଛୁ ।

ଶାରଦା—ଅଲୋ ପଞ୍ଚୁ ।

୧—ସଖୀ—କ-ଅ-ଣ ?

ଶାରଦା—କେମାଦେଇ ଏଣିକି ଅଜ ଅମକୁ ଗୁହାନ୍ତ ନାହିଁ ।

( ନନ୍ଦକା ଶାରଦାକୁ ଚିମୁଟି ଦେବା )

୨ୟ-ସଖୀ—ସତେତ ? ସେହୁ ଛବ ଅଡ଼କୁ ଖାଲି କାହିଁକି ଗୁହିଁ ରହିଛନ୍ତି ?

ନନ୍ଦକା—ତୋର ମୁଣ୍ଡ ଗଣ୍ଡି କରୁଛନ୍ତି ( ଦ୍ୱିତୀୟାର ବାଳ ଟାଣିଦେବା )

ସଖୀମାନେ—ଦେଖେଁ ଦେଖେଁ କେମାଦେଇ—ସେଥିରେ କି ମୋହନ ମୂର୍ତ୍ତି ଅଛି ଯେ, ଅମଠୁଁ ତୁମକୁ କାଢ଼ି ନେଉଛି ।

ନନ୍ଦକା—ନିଅ, ନିଅ—କିଏ ନେବ ନା ବାଣ୍ଟି କୁଣ୍ଟି ନେବ ? [ଛିବଦେଇ ସାବ ପ୍ରସ୍ଥାନୋଦ୍ୟତା ଓ ଅଦୂରେ ପିତାର ଆଗମନ ଦେଖି ଛିଡ଼ାହେବା ]

ସଖୀମାନେ—କେମାଦେଈ । ଫେରାଇ ନିଅ ଫେରାଇ ନିଅ—ନିଶ୍ୱାସ ପକାଅ ନାହିଁ । ବାନର ଗଳାରେ କି ଏ' ମୁକ୍ତାହାର ସାଜିବ ? [ହାତରେ ଦେବାକୁ ଚେଷ୍ଟା କରିବା, ନ ନେବାରୁ ଅଞ୍ଚଳ ମଧ୍ୟରେ ଗୁଞ୍ଜି ଦେବା ]

୨ୟ-ସଖୀ—ପଞ୍ଚୁ, ରାଜା ଅସୁଛନ୍ତି ।

୧ମ-ସଖୀ—ଆସଲୋ—ପଳାଇ ଅସଲୋ ।

ନନ୍ଦକା—ଛିହନା—

ସମସ୍ତେ—ନା,ନା—

ଶାରଦା—ମୁଁ ବି ଟିକିଏ ପାଖଛଡ଼ା ହୋଇଯାଏଁ । (ପ୍ରସ୍ଥାନ)

[ ସମସ୍ତଙ୍କର ପ୍ରସ୍ଥାନ ଓ ସୁବର୍ଣ୍ଣ ବେଶରୀଙ୍କ ପ୍ରବେଶ ]

ସୁବର୍ଣ୍ଣ—ନନ୍ଦ । ନନ୍ଦ । କନ୍ୟା ମୋର । (କୁଣ୍ଢାଇ ପକାଇବା)

ନନ୍ଦକା—ବାବା । ବାବା । ଏ'କଣ ?

ସୁବର୍ଣ୍ଣ—ତୁ କଣ ମତେ ଛାଡ଼ି ଯିବୁ, ନନ୍ଦ ?

ନନ୍ଦକା—ବାବା ।

ସୁବର୍ଣ୍ଣ—ତୁ ଛାଡ଼ିଗଲେ ମୁଁ ସେ ବଞ୍ଚି ପାରିବି ନାହିଁ, ନନ୍ଦ ।

ନନ୍ଦକା—ଏ' କଣ କହୁଛ, ବାବା ? ତୁମ୍ଭର ମୁଣ୍ଡ କଣ ଆଜି ଖରାପ ହୋଇଛି ?

ସୁବର୍ଣ୍ଣ—ସତେ, ମା ମୋର ମୁଣ୍ଡ ଆଜି ଖରାପ ହୋଇଛି । ବାସୁଦେବ ମନ୍ତ୍ରୀ ମୋର ମୁଣ୍ଡ ଆଜି ଖରାପ କରି ଦେଇଛନ୍ତି ?

ନନ୍ଦକା—ବାସୁଦେବ ମନ୍ତ୍ରୀଭାଇ ମୁଣ୍ଡ ଖରାପ କରି ଦେଇଛନ୍ତି ?

ସୁବର୍ଣ୍ଣ—ହଁ, ମା, ବାସୁଦେବ ମନ୍ତ୍ରୀଭାଇ ।·ସେ କହନ୍ତି, ତୁ ଆଉ ମୋତେ ସେପରି ଭଲ ପାଉନା—ଯେତେ ତୋର ବୟସ ହେଉଛି, ସେତେ ତୁ ମୋତେ ଛାଡ଼ି ଚାଲି ଯାଉଛୁ—କିନ୍ତୁ ମୁଁ ସେ ଠିକ୍ ବିପରୀତ ଭାବ ଅନୁଭବ କରୁଛି, ନନ୍ଦ ।

ନନ୍ଦକା—ବାବା । ମନ୍ତ୍ରୀଭାଇଙ୍କ ମଧ୍ୟ କଣ ମୁଣ୍ଡ ଖରାପ ହୋଇଯାଇଛି ?

ସୁବର୍ଣ୍ଣ—ତୋର ତ ମୁଣ୍ଡ ଖରାପ ହୋଇନାହିଁ,ନନ୍ଦ ? ସୂତିକା ଗୃହରେ, ମାତୃ କୋଳରେ, ତୋତେ ଯେପରି ଦେଖି ଆସିଥିଲି—ମାତୃବିୟୋଗାନ୍ତେ ନିଜ କୋଳରେ ନିଜର ଶଯ୍ୟା ପାର୍ଶ୍ୱରେ ଯେପରି ଦେଖି ଆସିଥିଲି, ଠିକ୍ ସେହିପରି ଅଛୁ ତ ନନ୍ଦ ?—ଠିକ୍ ସେହିପରି ସରଳ ନିର୍ମଳ ପ୍ରଫୁଲ୍ଲ ଅଛୁ ତ ନନ୍ଦ ?

ନନ୍ଦକା—ବାବା ( ମୁଖ ବିବର୍ଣ୍ଣ କରିଦେବା )

ସୁବର୍ଣ୍ଣ—ସହସା ଏ’ କ୍ଷ ଭାବପରିବର୍ତ୍ତନ ତୋର, ନନ୍ଦ ? ଗଣ୍ଡସ୍ଥଳରୁ ଅଶ୍ରୁ ହଠାତ୍ ଖସି ପଡ଼ିଲା କାହିଁକି ? ଓଷ୍ଠଦେଶରୁ ଜଳ୍ପ-ଲତା ହଠାତ୍ କୁଞ୍ଚିଗଲା କେଉଁଥିପାଇଁ ? ତୁ ଏ’ପରି ଭାବେ କମ୍ପୁଛୁ କାହିଁକି ନନ୍ଦ ?

ନନ୍ଦକା—ବାବା [ କୁଣ୍ଢାଇବାକୁ ଚେଷ୍ଟା କରିବା ବେଳେ ଶିରପଟ୍ଟ ଖସି ପଡ଼ିବା—ସୁବର୍ଣ୍ଣ ଦୂରକୁ ଘୁଞ୍ଚିଯିବା । ]

ସୁବର୍ଣ୍ଣ—ନନ୍ଦ ! ନନ୍ଦ !

ନନ୍ଦକା—ବାବା !

ସୁବର୍ଣ୍ଣ—ଆଜ ତୁଅଁ ନା--ପ୍ରମାଣ ମିଳିଛି ! ଆଜ୍ ମୋର ସନ୍ଦେହ ନାହିଁ । ମନ୍ତ୍ରୀ ଠିକ୍ କହୁଛନ୍ତି,ଅତୀବ ଦୁର୍ଲ୍ଲଭ ପଦାର୍ଥ—ଏହାହିଁ ମୋର କନ୍ୟାପକ୍ଷେ ଅତୀବ ଦୁର୍ଲଭ ପଦାର୍ଥ—ନନ୍ଦ ! ନନ୍ଦ ! ସତେ ସତେ କ’ଣ ଏଣିକି ଆଜ୍ ମୁଁ ତୋ’ର କେହି ନୁହେଁ—ଜନ୍ମ ଦେଇଥିଲି—ମାତୃ ବିୟୋଗାନ୍ତେ, ଦାନବତ୍ତ ଭଳି ତୋତେ ବଢ଼ାଇ ଥିଲି—ତାପ କ୍ଳେଶ ଭୁଲି ସୁଖୀ କରାଉଥିଲି—ତା’ର କଣ ଏହି ପ୍ରତିଦାନ ପାଇବି ବୋଲି ? ଆଦର କରୁଥିଲି, ଅନାଦର ପାଇବ ବୋଲି ? ସ୍ନେହ କରୁଥିଲି, ଘୃଣା ପାଇବି ବୋଲି ? ମୁଁ ତୋର କେହି ନୁହେଁ ? ମୁଁ ତୋ’ର କେହି ନୁହେଁ ? ସବୁ ତୋର ସେହି ଅପରିଚିତ, ସେହି ବିଦେଶୀ ଯୁବକ !

ନନ୍ଦକା—ବାବା ! ଏ’ କ୍ଷ କଥା କହୁଛନ୍ତି ? ମୋର ବାବାରୁ ମୁଁ କେହି ନୁହେଁ ?

ସୁବର୍ଣ୍ଣ—ସେହି ଯୁବକ ତେବେ ତୋର କେହି ନୁହେଁ ?

ନନ୍ଦକା—(ନୀରବ)

ସୁବର୍ଣ୍ଣ—ବୁଝି ହେଲି ଯେ !

ନନ୍ଦକା—ବାବା !

ସୁବର୍ଣ୍ଣ—ମୁଁ ଛଳନା, ଗୂଢ଼ଭାଷ ବୁଝେନା, ନନ୍ଦ—ମୁଁ ବୁଝେ ସ୍ପଷ୍ଟ କଥା—କହ, କିଏ ତୋ'ର ସର୍ବସ୍ୱ—ଏହି ଜୀର୍ଣ୍ଣକଙ୍କାଳସାର ପିତା, ନା—ସେହି ସବଳ ସୁଠାମ ଯୁବକ ?

ନନ୍ଦକା—(ସ୍ୱଗତ) ଏ କି ପରୀକ୍ଷା କ୍ଷେତ୍ରରେ ଆଣି ପକାଇଛନ୍ତି, ପିତା ?

ସୁବର୍ଣ୍ଣ—କଣ କହୁଛୁ ନନ୍ଦ ?

ନନ୍ଦକା—ବାବା !

ସୁବର୍ଣ୍ଣ—ଅଚ୍ଛା ଥାଉ, ତୁ ବର୍ତ୍ତମାନ ଝାଳରେ ବୁଡ଼ି ଗଲୁଣି—ଓଠ ତୋର ଶୁଖି ଗଲଣି, କାଲି ମୋତେ ଉତ୍ତର ଦେବୁ । (ପ୍ରସ୍ଥାନ)

ନନ୍ଦକା—(ଦୀର୍ଘନିଶ୍ୱାସ ତ୍ୟାଗ କରି) କି ଉତ୍ତର ଦେବି ? ଏଣେ ବିବେକ ସତ୍ୟ ପ୍ରକାଶ କରିବାକୁ ତାଡ଼ନା କରୁଛି—ତେଣେ ଲଜ୍ଜା ସତ୍ୟ ଗୋପନ କରିବାକୁ ପରାମର୍ଶ ଦେଉଛି ।—ବାଗୁର ମଧ୍ୟ ସ୍ଥଳରେ ରହି କି ସ୍ଥିର କରୁଛନ୍ତି ? ଉପଦେଶର ସହାୟତା ଆବଶ୍ୟକ ।

[ପ୍ରସ୍ଥାନୋଦ୍ୟତା ଓ ଶାରଦାର ପୁନଃ ପ୍ରବେଶ]

ଶାରଦା—ସହି ! ବାବାଙ୍କ ସଙ୍ଗେ କି କଥାବାର୍ତ୍ତା ହେଉଥିଲା କି ? ମୁହଁଟି କାହିଁକି ଶୁଖି ଯାଇଛି ? ବାବା କ'ଣ ମନା କଲେ କି ?

ନନ୍ଦକା—ତୋ ବାପା ତ ଏବେ ତୋ' କଥାରେ ହିଁ କରୁଛନ୍ତି ।

ଶାରଦା—କିନ୍ତୁ ସେ ତ ଆଉ ଏଙ୍କପରି (ଛବିଦେଖାଇ) ହିଁ କରୁ ନାହାନ୍ତି ?

ନନ୍ଦକା—କାହିଁକି ମ ? କ'ଣ ବିଗିଡ଼ି ଗଲା କି ? ତୋ ମୁହଁ ଦେଖି କାହିଁ କିଛିତ ଜଣା ପଡ଼ୁ ନାହିଁ ?

ଶାରଦା—'ହଁ' 'ନାହିଁ' ! ଉଭୟ ଯେ ମୋ ପକ୍ଷେ ସମାନ ସତ୍ୟ ।

ନନ୍ଦକା—ସତେ ?

ଶାରଦା—ନୁହେଁ ?

—ଗୀତ—

ସେ ଯେ ଉଡିଥିଲା ତୃଷା ଭରଣେ,
ମିଞ୍ଜି ମିଞ୍ଜି ମିଞ୍ଜି ମଞ୍ଜୁ କାରଣେ ॥
ଥିଲି ମୁଁ କାନନେ ଗୃହ୍ନି ଅନମନେ
ପିକ ପିକଗାନେ ଢାଳି ମନ ପ୍ରାଣେ
(ସେ ଯେ) ଶ୍ୱେତପର ଅସି ଅଖି ଚିପି ହସି
ବସିଲା (ଏକନେ) ହୃଦୟ ଦୋଳଣେ ॥

ନନ୍ଦକା—ତୁହ ଅନ୍ଧତରେ ସୁଖୀ, ଶାରଦା । (ପ୍ରସ୍ଥାନୋଦ୍ୟତା)

ଶାରଦା—ଗ୍ଭଲି ଯାଉଛ ଯେ ?

ନନ୍ଦକା—( ନେବାକୁ ଯାଇ ନ ନେଇ) ସତ୍ୟ । [ଦୀର୍ଘନିଶ୍ୱାସ ତ୍ୟାଗ କରି ପ୍ରସ୍ଥାନ ]

ଶାରଦା—ମନ ଦମ୍ଭ କର—ମନ ଦମ୍ଭ କର (ଅନୁଗମନ)

---

## ତୃତୀୟ ଦୃଶ୍ୟ

### —ଅସ୍ତ୍ରଶସ୍ତ୍ର ସୁସଜ୍ଜିତ କକ୍ଷ—

ବୀରେନ୍ଦ୍ର—(ଅସ୍ତ୍ରଶସ୍ତ୍ର ଦେଖି) ବୀରର ଅଙ୍ଗାଭରଣ ଏହି ଅସ୍ତ୍ରଶସ୍ତ୍ର କେତେଦିନ ଏହିପରି କକ୍ଷର ଭୂଷଣ ହୋଇ ରହିଥିବ— [ଗୋଟିଏ ଅସ୍ତ୍ର ଆଣି ପରୀକ୍ଷା କରୁ କରୁ ଯଥାସ୍ଥାନରେ ଥୋଇଦେଇ] ଥାଉ, ଏହିପରି ଭୂଷଣ ହୋଇ ରହିଥାଉ-ସେମାନଙ୍କର ଭାର ବହନ କରିବାକୁ ଏ ଶରୀର ଅକ୍ଷମ ହୋଇ ପଡ଼ିଲାଣି—ସେମାନଙ୍କର କଠିନ ସ୍ପର୍ଶ ସହ୍ୟ କରିବାକୁ ଏ ହୃଦୟ ଅଶକ୍ତ ହୋଇ ଗଲାଣି—ବୀରର ସେ ସାହସ କାହିଁ, ଯାହା ଅସ୍ତ୍ରର ଝଣ ଝଣ ଶବ୍ଦରେ ଝଲକି ଉଠୁଥିଲା ? ସେ କ୍ରୋଧ କାହିଁ, ଯାହା ଶତ୍ରୁର ହେ, ହେ ଶବ୍ଦରେ ରଞ୍ଜିତ ହୋଇ ଉଠୁଥିଲା ? ସମସ୍ତ ଯେ ଅଧୁନା ଅନିନ୍ଦ୍ୟ ସୁନ୍ଦରୀ ନନ୍ଦିକାର ସୌନ୍ଦର୍ଯ୍ୟ ଦର୍ଶନାବଧି ଲୁପ୍ତପ୍ରାୟ—ଜାଗରଣରେ ଏକମାତ୍ର ଚିନ୍ତା, ନିଦ୍ରାରେ ଏକମାତ୍ର ସ୍ୱପ୍ନ, ନନ୍ଦିକା—ସୁନ୍ଦରୀ ନନ୍ଦିକା—ରାଜକେମା ନନ୍ଦିକା । ଆଶା କି ମୋର ସତେ ପୂର୍ଣ୍ଣ ହେବ ? ରାଜା ତ ଦୂତକୁ ଫେରାଇ ଦେଲେ, ମନ୍ତ୍ରୀ ପୁଣି ତାଙ୍କୁ ବଶିଲେ କାହିଁକି ? ନିଶ୍ଚୟ—

( ଦୂରରେ ଶାରଦାର ଆସିବା ଦେଖି )

ଏଃ ସେତୁଣିଟା ଆସିଲାଣି ( ବାରକୁ ଭାବେ ବ୍ୟସ୍ତତାର ଅଭିନୟ କରିବା ବେଳେ ଶାରଦାର ପ୍ରବେଶ )

ଶାରଦା—ପ୍ରାଣେଶ୍ୱର ! ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ?

ବୀରେନ୍ଦ୍ର—(ବ୍ୟଙ୍ଗଭାବେ ସ୍ୱଗତ) ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ?

( ପ୍ରକାଶ୍ୟ ] କାହିଁ ? କେଉଁଠି ?

ଶାରଦା—ଏହିତ ମୁହଁ, ହାତ, ଗୋଡ଼ କହି ଦେଉଛି ।

ବୀରେନ୍ଦ୍ର—( ବ୍ୟଙ୍ଗଭାବେ ସ୍ୱଗତ ) ମୁହଁ, ହାତ, ଗୋଡ଼ ବନ୍ଧ ହେଉଛି । ( ପ୍ରକାଶ୍ୟେ ) କାହିଁ, ମୁଁ ତ କିଛି ଶୁଣି ପାରୁନାହିଁ ?

ଶାରଦା—କାନ ଥାଇ ଯେ ତୁମ୍ଭେ କାଲ ।

ବୀରେନ୍ଦ୍ର—ମୁଁ କାଲ, ଆଉ ତୁମେ ଖୁବ ଭଲ ?

ଶାରଦା—ଦେଖିଲ, ଭଲ କି ନୁହେଁ ।

ବୀରେନ୍ଦ୍ର—ହଁ, ହଁ, କୁଳଟାମାନଙ୍କ ମଧ୍ୟରେ ଭଲ ।

ଶାରଦା—କୁଳବତୀକୁ ଯେବେ କୁଳଟା ବୋଲି କୁହାଯାଏ, ତେବେ ମୁଁ ଭଲ କୁଳଟା ।

ବୀରେନ୍ଦ୍ର—କୁଳବତୀ କେବେ କୁ-ଭାବେ ପରପୁରୁଷ ନିକଟକୁ ଆସେ ନାହିଁ ।

ଶାରଦା—ନିଶ୍ଚୟ, ସୁ-ଭାବେ ନିଜ ପୁରୁଷ ନିକଟକୁ ଆସେ ।

ବୀରେନ୍ଦ୍ର—ତେବେ ନିଜ ପୁରୁଷ ନିକଟକୁ ଯାଉନାହଁ କାହିଁକି ?

ଶାରଦା—ଏହି ଯେ ନିଜ ପୁରୁଷ ନିକଟକୁ ଆସିଛି, ପ୍ରଭୁ ।

ବୀରେନ୍ଦ୍ର—ଶାରଦା ।

ଶାରଦା—ପ୍ରାଣେଶ୍ୱର ।

ବୀରେନ୍ଦ୍ର—ଶିଶୁଭାବ କ'ଣ ତୁମ୍ଭର ଏ ପର୍ଯ୍ୟନ୍ତ ଗଲ ନାହିଁ ? ସେହି ପିଲାଦିନର ଖେଳ ବେଳେ ଅଜ୍ଞାନ ଅନ୍ଧ ହୋଇ ମୋ ସଙ୍ଗେ ଯେଉଁ ଭାବେ ଖେଳୁଥିଲ, ଠିକ୍ ସେହି ଭାବେ ଆଜି ମଧ୍ୟ ଖେଳିବ ?

ଶାରଦା—ଆଜି ମଧ୍ୟ ଖେଳିବା କ'ଣ ପ୍ରଭୋ ? ଆଜୀବନ ଖେଳିବା ।

ବୀରେନ୍ଦ୍ର—ଅରେ ଜ୍ଞାନଚକ୍ଷୁ ମେଲି ଦେଖ ।

ଶାରଦା—ପରିଷ୍କାର ଦେଖୁଛି, ପ୍ରାଣେଶ୍ୱର । ପିଲାଦିନୁ ତୁମକୁ ଯାହା ଅର୍ପଣ କରିଛି, ତାହା ଫେରାଇ ଆଣିବାର କ୍ଷମତା ଆଉ ମୋର-ନାହିଁ ।

ବୀରେନ୍ଦ୍ର—ତୁମର ଫେରାଇ ଆଣିବାର କ୍ଷମତା ଥାଉ, ବା ନଥାଉ, ମୁଁତ କିନ୍ତୁ ତାହା ଗ୍ରହଣ କରିବିନାହିଁ ।

ଶାରଦା—ତୋ'ର କାମ ମୁଁ କରୁଛି, ପ୍ରଭୋ !

ବୀରେନ୍ଦ୍ର—ଦେଖ, ଶାରଦା ! ଏ' ପର୍ଯ୍ୟନ୍ତ ଆମର ବିବାହ ହୋଇନାହିଁ

ଶାରଦା—ବିବାହ ହୋଇ ନାହିଁ ?

ବୀରେନ୍ଦ୍ର—ଲୌକିକଭାବରେ କି ହୋଇଛି ?

ଶାରଦା—ଲୌକିକତାର କି ପ୍ରୟୋଜନ, ପ୍ରାଣେଶ୍ୱର ?

ବୀରେନ୍ଦ୍ର—ଏ' ସଂସାରରେ ବାସ କରିବାକୁ ହେଲେ ତାହା ଯେ ଖୁବ୍ ଆବଶ୍ୟକ ।

ଶାରଦା—କାହିଁ, ମୁଁ ତ କିଛି ଅବଶ୍ୟକତା ଦେଖୁନାହିଁ—ବୃକ୍ଷ ସଙ୍ଗେ ଲତାର ମନ ମିଳିଲା, ଲତା ଯାଇ ବୃକ୍ଷକୁ ଆଲିଙ୍ଗନ କଲା—ହରିଣ ସଙ୍ଗେ ହରିଣୀର ମନ ମିଳିଲା, ଉଭୟେ ପୁରୁଷ ସ୍ତ୍ରୀ ଭାବରେ ମହାନନ୍ଦରେ ବିଚରଣ କଲେ - ଏଥିରେ ପୁଣି ଲୌକିକତାର କି ପ୍ରୟୋଜନ ?

ବୀରେନ୍ଦ୍ର—ବେଶ, ତେବେ ଆମ୍ଭମାନଙ୍କର ମନ ମିଳିନାହିଁ ?

ଶାରଦା—ମିଥ୍ୟା କଥା, ମିଳନଦିନର କଥା ଥରେ ସ୍ମରଣ କର, ଆଜି ସେ ନିଭୃତ ନିକୁଞ୍ଜର କଥା ଥରେ ମନେ କର ?

ବୀରେନ୍ଦ୍ର—ଯେତେବେଳେ ଯ'ଣ ହୋଇଯାଇଥିବ, ତାହା କ'ଣ ଆଜି ଯାଏ ମନେ ଅଛି ?

ଶାରଦା—ଏତେ ଚଞ୍ଚଳ ପାଶୋରି ପକାଇଲ ? ହଉ, ତୁମେ ଭୁଲି ପାରକେ, ମୁଁତ ଆଜି ଭୁଲିନାହିଁ—ଭୁଲି ମଧ୍ୟ ପାରିବି ନାହିଁ ।

ବୀରେନ୍ଦ୍ର—ବର୍ତ୍ତମାନ ତ ମନ ମିଳୁନାହିଁ ।

ଶାରଦା—ଏଥିରେ ମୋର କି ଦୋଷ ? ତୁମର ମନର ଦୃଢ଼ତା ନାହିଁ ବୋଲି କ'ଣ କାହାର ମନର ଦୃଢ଼ତା ନାହିଁ ?

ବୀରେନ୍ଦ୍ର—( ସ୍ୱଗତ ) ଭଲ ଜଞ୍ଜାଳ ।

ଶାରଦା—ମୁଁ ବର୍ତ୍ତମାନ ଆସୁଛି, ପ୍ରାଣେଶ୍ୱର । ବାପା ସନ୍ଧ୍ୟାକୁ ଖଣ୍ଡିଏ ପତ୍ର ଲେଖିଛନ୍ତି, ଶୀଘ୍ର ଦେବାକୁ ହେବ ।

ବୀରେନ୍ଦ୍ର—କାହାକୁ ? ଜେମାଦେଈଙ୍କୁ ?

ଶାରଦା—ହଁ, ମୁଁ ଆସୁଛି । ( ପ୍ରସ୍ଥାନୋଦ୍ୟତା )

ବୀରେନ୍ଦ୍ର—( ବାଧାଦେଇ ) ଅସିଲ କି ନାହିଁ, ଏପରି ତରବର ହୋଇ ଗ୍ଲଲି ଯାଉଛ, ପ୍ରାଣେଶ୍ୱର ?

ଶାରଦା—ଦିନାନ୍ତେ ଥରେ ପ୍ରାଣେଶ୍ୱରଙ୍କ ଦର୍ଶନ ଲାଭ, ତା'ତ ହେଲା—ଅଉ ବର୍ତ୍ତମାନ ଏଠାରେ ଦାସୀର କି ପ୍ରୟୋଜନ, ଗୋଟାଏ ଜରୁରି କାର୍ଯ୍ୟ—ସେଥିରେ କି ମୁଁ ଠିଆହୋଇ ରହିପାରେ ? ( ପ୍ରସ୍ଥାନୋଦ୍ୟତା )

ବୀରେନ୍ଦ୍ର—ଏହି ପରି ତୁମର ସ୍ୱାମିଭକ୍ତି ?

ଶାରଦା—କାହିଁକି, ପ୍ରଭୋ ? କେଉଁଠାରେ ତ୍ରୁଟି ହୋଇଛି ? ଦୟାକରି ଥରେ ଶିଖାଇ ଦିଅ, ପ୍ରଭୋ ।

ବୀରେନ୍ଦ୍ର—ସ୍ୱାମିର ଅନୁମତି ନ ନେଇ ସ୍ତ୍ରୀର କ'ଣ ସ୍ୱାଧୀନ ଭାବେ ଗ୍ଲଲି ଯିବା ଉଚିତ ?

ଶାରଦା—ସବୁଦିନତ ମୁଁ ଏହିପରି ଗ୍ଲଲି ଯାଇ ଥାଏଁ, ପ୍ରଭୋ, କାହିଁ ଦିନେତ ଆପତ୍ତି କର ନାହିଁ ?

ବୀରେନ୍ଦ୍ର—ମୁଁ ପରୀକ୍ଷା କରୁଥିଲି ।

ଶାରଦା—ଛି, ପ୍ରଭୋ । ଏ ମୂଢ଼ାକୁ ପୁଣି ପରୀକ୍ଷା ।

ବୀରେନ୍ଦ୍ର—ପ୍ରାଣେଶ୍ୱରି ! ଆଜି ମୁଁ ତୁମକୁ ଛାଡ଼ିବି ନାହିଁ ।

ଶାରଦା—ଛାଡ଼ିବ କ'ଣ ପ୍ରାଣେଶ୍ୱର । ଏ ଦାସୀ ଯେ ତୁମ ଶ୍ରୀଚରଣରେ ଚିରଦିନ ପାଇଁ ବିକା । ପ୍ରାଣେଶ୍ୱର ! ମୁଁ ଥରେ ପତ୍ରଟା ସନ୍ଧ୍ୟାକୁ ଦେଇ ଆସେ ।

ବୀରେନ୍ଦ୍ର—ତାହା ଯେତେବେଳେ ନିତାନ୍ତ ଜରୁର, ମୋତେ ଦିଅ, ମୁଁ ଏହିକ୍ଷଣି ଲୋକ ଦୌଡ଼ାଇ ଦେଉଛି ।

ଶାରଦା—ଏ ଗୋଟିଏ ଗୁପ୍ତ ପତ୍ର ।

ବୀରେନ୍ଦ୍ର—ମୋତେ କ'ଣ ଅବିଶ୍ୱାସ ହେଉଛି ?

ଶାରଦା—ଅବିଶ୍ୱାସ ? ସ୍ୱାମିଙ୍କୁ ଅବିଶ୍ୱାସ ! ମାତ୍ର—

ବୀରେନ୍ଦ୍ର—ମାତ୍ର କ'ଣ ?

ଶାରଦା—ପିତାଙ୍କ ଆଦେଶ ଯେ ମୁଁ ନିଜେ ନେଇଯିବି—ସନ୍ତୁ ଛଡ଼ା ଅନ୍ୟ କାହାରିକୁ ଦେବି ନାହିଁ । ଏପରି କ'ଣ, ଏ କଥା ମଧ୍ୟ କାହାରିକୁ ପ୍ରକାଶ କରିବି ନାହିଁ ।

ବୀରେନ୍ଦ୍ର—ଏହିତ ମୋତେ କହି ସାରିଲଣି ।

ଶାରଦା—ସ୍ୱାମିଙ୍କୁ କି ସ୍ତ୍ରୀ କିଛି ଗୋପନ କରିପାରେ ?

ବୀରେନ୍ଦ୍ର—ସ୍ତ୍ରୀ ପ୍ରତି କି ସ୍ୱାମୀ କେବେ ବିଶ୍ୱାସଘାତକ ହୋଇ ପାରେ ?

ଶାରଦା—ଯେଉଁ ଲୋକ ହସ୍ତରେ ପଠାଇବେ, ସେ ଯେବେ ଅବିଶ୍ୱାସୀ ହୁଏ ?

ବୀରେନ୍ଦ୍ର—ମୋର କ'ଣ ଏତିକି ଟିକିଏ ଦାୟିତ୍ୱ ଜ୍ଞାନ ନାହିଁ ? ତୁମର ସନ୍ତୁ କ'ଣ ମୋର ସନ୍ତୁ ନୁହେଁ—ତୁମର ପିତା କ'ଣ ମୋର ପିତା ନୁହନ୍ତି ? ତୁମର ମଙ୍ଗଳ କଣ ମୋର ମଙ୍ଗଳ ନୁହେଁ ?

ଶାରଦା—ପ୍ରାଣେଶ୍ୱର ! ଦାସୀର ଦୋଷ ମାର୍ଜନା କରନ୍ତୁ ।

ବୀରେନ୍ଦ୍ର—ପ୍ରାଣେଶ୍ୱରି ! ଏଠାକୁ ଆସିଲା ଦିନୁ ତୁମର ଗୀତ ମୁଁ ଦିନେ ହେଲେ ମନଦେଇ ଶୁଣି ନାହିଁ—ଗୋଟିଏ ଗାଇବ କି ? ଆଜି ମନ ପ୍ରାଣ ଦେଇ ଶୁଣିବି ।

ଶାରଦା—ପ୍ରାଣେଶ୍ୱର ! ଏତେ ଅନୁଗ୍ରହ ଏ ଦାସୀ ପ୍ରତି !

ବୀରେନ୍ଦ୍ର—ପ୍ରାଣେଶ୍ୱରୀ ! ପତ୍ରଟି ଦିଅ, ମୁଁ ଶୀଘ୍ର ଲୋକଦ୍ୱାରା ପଠାଇ ଦିଏଁ—ଜରୁରୀ ପତ୍ର କିନା ? ( ପତ୍ର ନେଇ ପ୍ରସ୍ଥାନ କଲେ ) ହଁ ପ୍ରାଣେଶ୍ୱରି, ସେ ଘରେ ତୁମର ବୀଣା ଅଛି, ତାକୁ ଟିକିଏ ବଜାଇ ରଖିବ—ଏଥର ସଙ୍ଗେ ତୁମର ବୀଣା ବଜାଇବା ଓ ଗୀତ ଗାଇବା ଶୁଣିବି ।

ଶାରଦା—ଅଚ୍ଛା, ଯାଅ ତୁମ୍ଭେ ଶୀଘ୍ର ଆସ, ମୁଁ ବୀଣାର ସୁର ବାନ୍ଧି ଠିକ୍ କରୁଛି ।

ବୀରେନ୍ଦ୍ର—ଅଚ୍ଛା (ଯାଉଁ ଯାଉଁ) ଦେଖ, ବେଶ ଭଲକରି ବାନ୍ଧିବ, ପ୍ରାଣେଶ୍ୱରି । (ପ୍ରସ୍ଥାନ)

ଶାରଦା—ଆଜି ପତିଙ୍କର କି ସୁଅଭି—କି ଗୀତ ଗାଇବି ? 'ଆଜି ଦେବି ଉପହାର'—ନା, ନା—'କେତେଦିନେ ପାଇଛି ତେ' ନା, ନା—'ବନ୍ଧୁ କି ଆଜି କାମନା ମୋର'—ନା, ନା— କି ଗୀତ ଗାଇଲେ ମୋର ପତିଙ୍କୁ ଭଲ ଲାଗିବ ? ( ଗଳା ଝାଡ଼ି ) କାହିଁ ? ଗଳାର ସ୍ୱରତ କାହିଁକି ପରିଷ୍କାର ହେଉନାହିଁ ?—ବୀଣାର ସ୍ୱର ଦେଖେଁ, କିପରି ହେଉଛି ।

( ପ୍ରସ୍ଥାନ )

( ବୀରେନ୍ଦ୍ରର ପୁନଃ ପ୍ରବେଶ )

ବୀରେନ୍ଦ୍ର—ଏତେଦୂର ଷଡ଼ଯନ୍ତ୍ର ! ବୁଝିଛି, ବୃଦ୍ଧ ! ତୋର ସ୍ୱାର୍ଥ-ପଥରେ କେମାନେଇ ଗୋଟିଏ ପ୍ରଧାନ ଅନ୍ତରାୟ—ତାଙ୍କ ହସ୍ତାନ୍ତର ନ କଲେ ଶାରଦାର ସହିତ ମୋର ବିବାହ ଅସମ୍ଭବ । କିନ୍ତୁ ଏତିକି କ'ଣ ବୁଝିପାରୁ ନାହୁଁ, ବୃଦ୍ଧ ! ସୁନ୍ଦରୀ ଛାଡ଼ି ଅସୁନ୍ଦରୀ ପତ୍ନୀ କେହୁ କେବେ କାମନା କରେ ?—ରାଜକେମା ଛାଡ଼ି ପ୍ରଜା-କନ୍ୟା କେହୁ କେବେ ବିବାହ କରିବାକୁ ଚାହେଁ ? ମୋତେ ଆଶ୍ରୟ ଦେଇ ଥିଲ

ବୋଲି କ'ଣ ମୋ ଉପରେ ଅଜ୍ଞାତନ ଅଧିପତ୍ୟ କରୁଥିବୁ ? —ଯେତେଦିନ ତୋର ଅଧୀନ ଥିଲି, ସେତେଦିନ ତୋର ପ୍ରଭୁତ୍ୱ ମାନୁଥିଲି—ବର୍ତ୍ତମାନ ମୁଁ ସ୍ୱାଧୀନ, ତୋ ପରି ଜଣେ ଉଚ୍ଚପଦସ୍ଥ ରାଜକର୍ମଚାରୀ—ଅବସ୍ଥାରେ ଯେପରି ଉନ୍ନତ ହୋଇଛି, ଅଭିଳାଷରେ ମଧ୍ୟ ସେହିପରି ଉନ୍ନତ ହେବ । ସୁନ୍ଦରୀକୁ ସୁନ୍ଦରୀ ପାଇବ—ରାଜ୍ୟ ସମ୍ପଦରେ ମୋର ଚିର ଅଧିକାର ହେବ ।

( ଶାରଦାର ବୀଣା ହସ୍ତେ ପ୍ରବେଶ )

ଶାରଦା—ପ୍ରଭୋ ! ଆଜି ବୀଣାଟା କାହିଁକି ବାଜୁନାହିଁ—ଗଳାର ସ୍ୱର କାହିଁକି ଖେଳୁ ନାହିଁ ? କୌଣସି ଗୀତ କାହିଁକି ମନେ ପଡ଼ୁନାହିଁ ?

ବୀରେନ୍ଦ୍ର—ତୁମର କଥାବାର୍ତ୍ତା ହିଁ ଗୀତ, ପ୍ରାଣେଶ୍ୱରି । ଚାଲ, ଆଜି ମୋତେ ସଙ୍ଗ ଦେବ—ତୁମର ବନ୍ଧନ ଖାଇ ମୁଁ ଧନ୍ୟ ହେବି ।

ଶାରଦା—ମୋର ବନ୍ଧନ ଖାଇ ମୁଁ ଧନ୍ୟ ହେବ, ପ୍ରାଣେଶ୍ୱର !

ବୀରେନ୍ଦ୍ର—ଚାଲ ତେବେ ଶୀଘ୍ର ଚାଲ ।

ଶାରଦା—( ବୀଣା ଥୋଇ ଦେଇ, ହାତଧରି ) ଆସ ପ୍ରଭୁ !

ବୀରେନ୍ଦ୍ର—ବୀଣାଟା ଛାଡ଼ିଗଲ ଯେ ?

ଶାରଦା—ଭୁଲି ଯାଇଛି, ପ୍ରାଣେଶ୍ୱର !

ବୀରେନ୍ଦ୍ର—ଚାଲ, ମୁଁ ନେଇ ଯାଉଛି । ( ସ୍ୱଗତ ) ଏ'କୁ କିଛିକ୍ଷଣ ଅଟକାଇ ରଖିବା ଦରକାର ।

( ଶାରଦାର ହାତ ଧରି ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

—ଦୁର୍ଗ ଓ ତନ୍ନିକଟସ୍ଥ କୁଞ୍ଜବନ—

(ବାସୁଦେବ ଦୁର୍ଗଅଡ଼କୁ ଲକ୍ଷ୍ୟକରି ସେହି କୁଞ୍ଜବନରେ ଲୁକ୍କାୟିତ ଭାବେ ଦଣ୍ଡାୟମାନ )

ବାସୁଦେବ —କାହିଁ, ସଞ୍ଜ ତ ହୋଇ ଗଲାଣି, କେମାଦେଇ ଆସିଲେ ନାହିଁ କାହିଁକି ? ଶାରଦା କଣ ଆସି ନାହିଁ ? ଏହୁ ଯେ କେମାଦେଇ ।

( ନନ୍ଦଜାର ପ୍ରବେଶ )

ନନ୍ଦଜା—ମନ୍ତ୍ରି ଭାଇ ! ମୁଁ ଠିକ୍ କରିଛି ।

ବାସୁଦେବ—କଣ ଠିକ୍ କଲ ?

ନନ୍ଦଜା—ତୁମେ ମନା କରିଦିଅ ।

ବାସୁଦେବ—ତାହାହେଲେ କ'ଣ ତୁମ୍ଭେ ଚିରଦିନ କୁମାରୀ ରହିବ ?

ନନ୍ଦଜା—କ୍ଷତି କଣ ?

ବାସୁଦେବ—କ୍ଷତି ଲାଭ ଜାଣେ ନାହିଁ—ସଂସାରରେ ଥାଇ ଯାହା କରଣୀୟ ତାହା ଉପରେ ଅବହେଳା କରିବ ?

ନନ୍ଦଜା—ମୋର ପିତାଙ୍କର ମନରେ କଦାପି କଷ୍ଟ ଦେଇପାରିବି ନାହିଁ ।

ବାସୁଦେବ—ପିତା ଯେ ବାର୍ଦ୍ଧକ୍ୟ ହେତୁ ଭୁଲ ବୁଝୁଛନ୍ତି ।

ନନ୍ଦଜା—ବାର୍ଦ୍ଧକ୍ୟ ହେତୁ ମୋତେହିଁ ଏକମାତ୍ର ଅବଲମ୍ବନ ମନେ କରୁଛନ୍ତି ।

ବାସୁଦେବ—ବିବାହ ହେଲେତ ସେଥିରେ ବ୍ୟାଘାତ ଘଟିବ ନାହିଁ ।

ନନ୍ଦକା—ଖୁବ୍ ଘଟିବ ଭାଇ !-ମୋର କର୍ତ୍ତବ୍ୟ ତାହାହେଲେ କେତେ ପରିମାଣରେ ବାଣ୍ଟି ହୋଇଯିବ—ମୋର ଆଦର ଯତ୍ନ କେତେ ପରିମାଣରେ ବିଭକ୍ତ ହୋଇଯିବ—ସେହି ଏକ ମନରେ, ଏକ ପ୍ରାଣରେ କି ପିତୃ-ସେବା କରି ପାରିବି ? ବିଶେଷତଃ, ପୁଣି ମୁଁ ଏଠୁଁ ଅନ୍ତର ହୋଇଯିବି—କା' ଉପରେ ନିର୍ଭର କରି ରହିବେ ?

ବାସୁଦେବ—କେମାଦେଈ ! ଭାବୁଛ କି ସୁବର୍ଣ୍ଣକେଶରୀଙ୍କ ପରେ ଏହି ରାଜସିଂହାସନର ଦଶା କ'ଣ ହେବ ?

ନନ୍ଦକା—ରାଜଶୂନ୍ୟ ହେବ ।

ବାସୁଦେବ—ତେବେ ?

ନନ୍ଦକା—ମୋର କି ଶକ୍ତି ଅଛି ?

ବାସୁଦେବ—ତୁମ୍ଭେ ସତ୍‌ପାତ୍ରରେ ଅର୍ପିତ ହେଲେ କି ତାହା ହେବ ?

ନନ୍ଦକା—କେଶରୀବଂଶ ତ ଆଉ ରହିବ ନାହିଁ ?

ବାସୁଦେବ—ନାମପରିବର୍ତ୍ତନ ଘଟିଯାଉରେ ସତ୍ୟ, କିନ୍ତୁ ରାଜ-ଶୂନ୍ୟତା ତ ଘଟିବ ନାହିଁ ? ରାଜ୍ୟ ଅରାଜକତାରୁ ତ ରକ୍ଷା ପାଇବ ?

ନନ୍ଦକା—ବୁଝିପାରୁଛି, ମନ୍ତ୍ରି ଭାଇ । ତୁମେ କାହିଁକି ଏ ବିବାହରେ ଏତେ ଜିଦର କରୁଛ—କିନ୍ତୁ ମୁଁ ନାରୁବ ।

ବାସୁଦେବ—ସେପରି ଉଦାସୀନା ହେଲେ କି ଚଳିବ ?—ଏଣେ ତୁମର ଏକମାତ୍ର ବୃଦ୍ଧ ପିତା—ତେଣେ ଯେ ତୁମର ଲକ୍ଷ ଲକ୍ଷ ସନ୍ତାନ-ଗଣ; ଏଣେ ତୁମେ ଜଣକର ଜୀଅଲ ମାତ୍ର ରକ୍ଷା କରିବ—ତେଣେ ଯେ ତୁମେ ଲକ୍ଷ ପ୍ରାଣିର ପ୍ରାଣ ରକ୍ଷା କରିବ; ସୁତରାଂ ବିଚାର କରି ଦେଖ, ଏପରି ସ୍ଥଳେ ତୁମର କର୍ତ୍ତବ୍ୟ କ'ଣ ?

ନନ୍ଦକା—ତେବେ କି ଉପଦେଶ ଦେଉଛ, ଭାଇ ?

ବାସୁଦେବ—ମୋର ଅନ୍ଧକାର ପଙ୍କରୁ ଅବଶ୍ୟ ବୁଝି ପାରୁଥିବ ।

ନନ୍ଦକା—ପଙ୍କ ?

ବାସୁଦେବ—ଶାରଦା ହାତରେ ଯେଉଁ ପତ୍ର ପଠାଇଥିଲି ।

ନନ୍ଦକା—ଶାରଦା ହାତରେ ?

ବାସୁଦେବ—ପତ୍ର କ'ଣ ପାଇନାହଁ ?—ଶାରଦା କଣ ଆସିନାହିଁ ?

ନନ୍ଦକା—କାହିଁ, କେହିତ ଆସିନାହିଁ ?

ବାସୁଦେବ—ତୁମେ ତେବେ ଜାଣିଲ କିପରି ମୁଁ ଏଠାରେ ତୁମକୁ ଅପେକ୍ଷା କରୁଛି ?

ନନ୍ଦକା—ମୁଁ ଦୁର୍ଗ ଶିଖରରେ କର୍ତ୍ତବ୍ୟ ବିଷୟ ଚିନ୍ତା କରୁଁ କରୁଁ ବୁଲୁଥିଲି, ହଠାତ୍ ତୁମକୁ ଦେଖି ଓହ୍ଲାଇ ଆସିଲି !

ବାସୁଦେବ—ତେବେ ଶାରଦା ଗଲା କେଉଁଆଡ଼େ ? ପତ୍ରଖଣ୍ଡ କ'ଣ କଲା ? ସେଥିରେ ଯେ ଅନେକ ଗୁପ୍ତ କଥା ଲେଖାଥିଲା ।

ନନ୍ଦକା—ବୋଧହୁଏ ସେନାପତିଙ୍କ ଘରକୁ ଯାଇଥିବ, ଗଳ୍ପ କରୁଁ କରୁଁ ବସି ପଡ଼ିଥିବ । ଅଚ୍ଛା ଭାଇ ! ସହର ବିବାହଟା ଶୀଘ୍ର ସାରି ଦେଉ ନାହଁ କାହିଁକି ? ସେନାପତି କ'ଣ ରାଜି ହେଉ ନାହାନ୍ତି ?—ସେ ନିଶ୍ଚୟ ରାଜି ହେବେ । ପିଲାଙ୍କୁ ଏବେ ଘନିଷ୍ଠତା—ପୁଣି ତୁମ୍ଭଯୋଗୁଁ ମଣିଷ—ରାଜିନ ହୋଇ ଯିବେ କେଉଁ ଆଡ଼େ ?—ତୁମେ ଖାଲି ମନ ଦେଉ ନାହଁ ।

ବାସୁଦେବ—ସେ ଚିନ୍ତାଠାରୁ ଏ'ଚିନ୍ତା ଯେ ଅଧିକ ଜେମାଦେଇ ! (ଅନ୍ୟମନସ୍କ ଭାବେ) ମୋର ବଡ଼ ସନ୍ଦେହ ହେଉଛି ।

ନନ୍ଦକା—ସନ୍ଦେହ କରିବାର କ'ଣ ଅଛି ?

ବାସୁଦେବ—ସେ ଯେ ଭାରି ଦୁଷ୍ଟ—ଚିଠିଖଣ୍ଡ ଯେବେ କେଉଁଠି ପକାଇ ଦେଇଥାଏ ?

ନନ୍ଦକା—କ୍ଷତି କ'ଣ ?

ବାସୁଦେବ—ଯଥ ଖୁବ୍ ଅଛୁ, ଜେମାଦେଈ ।

ନନ୍ଦକା—ଚାହିଁକି ? କଣ ଲେଖା ଥିଲା କି ?

ବାସୁଦେବ—ସେଥିରେ ଏ'ପର କଥା ଲେଖାଥିଲା, ଯାହା ଯେବେ ରାଜା କୌଣସି ମତେ ଜାଣି ପାରନ୍ତି, ମୋର ଏ ରାଜ୍ୟରେ ବାସ କରିବା ଏକାବେଳକେ ଦୁରୂହ ହୋଇ ପଡ଼ିବ । ପତ୍ର କଣ ହେଲା ? ଶାରଦା କେଉଁଆଡ଼େ ଗଲା ?

ନନ୍ଦକା—ସ୍ଥିର ହୁଅ, ଭାଇ ! ସେ ଏହିକ୍ଷଣି ଆସିଯିବ । ( ସ୍ୱଗତ ) ବଡ଼ ଠୋକ, ମୋତେ ଥଟ୍ଟା କରୁଥିଲା—ଆଜି ତୋର ମଜା ଜାଣିବୁ ।

ବାସୁଦେବ—ଜେମାଦେଈ ! ତୁମେ ଯାଅ—ମୁଁ ଦେଖେଁ, ଶାରଦା କେଉଁଆଡ଼େ ଗଲା—ପତ୍ର କ'ଣ କଲା ।

( ସୁବର୍ଣ୍ଣ କେଶରୀଙ୍କର ପ୍ରବେଶ )

ସୁବର୍ଣ୍ଣ—ଏହି ସେ ପତ୍ର !—ନରାଧମ ! ବିଶ୍ୱାସଘାତକ ! ( ଅସି ନିଷ୍କୋଷିତ କରି ହତ୍ୟା କରିବାକୁ ଯିବା )

ନନ୍ଦକା—ବାବା ! ବାବା ! ( ହସ୍ତ ଧାରଣ କରିବା )

---

( କ୍ରମଶଃ )

## ପ୍ରଥମ ଦୃଶ୍ୟ

[ କାରାଗାରର ତୋରଣ ଦେଶ ]

ସୁବର୍ଣ୍ଣ—ଏତେ ବିଶ୍ୱାସଘାତକତା—ପିତା କନ୍ୟା ମଧ୍ୟରେ ବିଚ୍ଛେଦ ଜନ୍ମାଇ ଦେବା । 'ପିତା ବୃଦ୍ଧ, ଅସ୍ଥିରମତି, ସ୍ନେହାଧିକ୍ୟ ହେତୁ ରାଜ୍ୟର ଭାବୀ ମଙ୍ଗଳ ଦିଗରୁ ଚିନ୍ତା କରିବାକୁ ଅକ୍ଷମ, ତୁମ୍ଭେ ପ୍ରାପ୍ତବୟସ୍କା—ଧର୍ମ ରକ୍ଷାକର, ରାଜ୍ୟ ରକ୍ଷାକର—ପ୍ରୟୋଜନ ହେଲେ ପିତାର ଅବାଧ୍ୟ ହେବାକୁ ମଧ୍ୟ କୁଣ୍ଠିତ ହୁଅନାହିଁ ।'—ଉଃ ! କି ବିଶ୍ୱାସଘାତକତା—ମୋର ପ୍ରାଣାଧିକାକୁ ମୋଠାରୁ ବିଚ୍ଛିନ୍ନ କରିନେବା ।—ଏହା ଯେ ପ୍ରାଣବଧାପେକ୍ଷା ଗୁରୁତର । ପୁଣି ଲେଖାଅଛି—'ଏଥର ମୋର ଜନ୍ମ ଦିନର ଭେଟି ଚେମ୍ବରଗଙ୍କର ସେହି ଚିତ୍ରପଟ, ଯାହା ଶାରଦା ହାତରେ ପଠାଇଥିଲି, ଏହାର ସାଧୁ ଉଦ୍ଦେଶ୍ୟ ତୁମ୍ଭେ ବେଶ୍ ବୁଝିପାରିଥିବ ।' ଉଃ କି ଭୟଙ୍କର ।—ନ ବୁଝି ନ ସୁଝି ମୋର କନ୍ୟାକୁ ସିନା ଦୋଷୀ କରିଥିଲି—ସୁଧାରେ କି ଗରଳ ଆଣି ନରାଧମ ମିଶାଇ ଦେଇଥିଲା ପୁଣି ସେନାପତି କହୁଥିଲେ, ବିବାହ ପ୍ରସ୍ତାବ ଘେନି କର୍ଣ୍ଣାଟରୁ

ଦୂତ ଅସିବା, ମନ୍ତ୍ରୀଙ୍କର କୌଶଳ । ନିଶ୍ଚୟ ସ୍ୱାର୍ଥସିଦ୍ଧି ନିମନ୍ତେ ବାସୁଦେବ ଏହି ଷଡ଼ଯନ୍ତ୍ରକାରୀ—ଧନ୍ୟ ଈଶ୍ୱର । ସ୍ୱୈରକୁ ଯଥାସମୟରେ ଧରାଇ ଦେଇ'ଛ—ମୋର କନ୍ୟାକୁ ଶଇତାନର କବଳରୁ ରକ୍ଷା କରିଛ । ରକ୍ଷି । ଯା, ଶୀଘ୍ର ସେନାପତି ଓ ଜହ୍ଲାଦକୁ ଡାକି ଦେନି ଆ—ପାପୀ କଳଙ୍କୁ ଏ ପୁଣ୍ୟ-ପୀଠରୁ ଯେତେ ଶୀଘ୍ର ଦୂର କରାଯାଏ ସେତେ ମଙ୍ଗଳ ।

(ନନ୍ଦକାର ପ୍ରବେଶ)

ନନ୍ଦକା—ଏ କଳଙ୍କିନୀକୁ ମଧ୍ୟ ସେହି ଦଣ୍ଡ ଦେଉନ୍ତୁ, ପିତଃ !

ସୁବର୍ଣ୍ଣ—ତୁ ପୁଣି ଏଠି କାହିଁକି, ନନ୍ଦ ?

ନନ୍ଦକା—ପୁଣ୍ୟ-ପୀଠରୁ ଯେତେବେଳେ କଳଙ୍କ ଦୂର କରିବାକୁ ବ୍ୟବସ୍ଥା କରୁଛନ୍ତି, ସେତେବେଳେ ଅଉ ଗୋଟିଏ କଳଙ୍କ ବାକି ରହିଯିବ କାହିଁକି ପିତଃ ?

ସୁବର୍ଣ୍ଣ—କାହାଙ୍କ ସ୍ୱର୍ଗରେ ଯେ ନିଷ୍କଳଙ୍କ ମୁହୂର୍ତ୍ତିକ ପାଇଁ କଳଙ୍କିତ ହୋଇ ଥିଲ ମା !

ନନ୍ଦକା—ଭୁଲ ପିତା, ଏ କଳଙ୍କ ସ୍ୱାଭାବିକ—ଚିରସ୍ଥାୟୀ !

ସୁବର୍ଣ୍ଣ—ସ୍ୱାଭାବିକ ଚିରସ୍ଥାୟୀ ?

ନନ୍ଦକା—ଆଜ୍ଞା ପିତଃ, କର୍ଣ୍ଣାଟ ରାଜ ପ୍ରତି ଅଭାଗୀର ପ୍ରଗାଢ଼ାକର୍ଷଣ ଦେଖି, ମନ୍ତ୍ରୀ ଏପରି ପନ୍ଥ ନେଇଥିଲେ !

ସୁବର୍ଣ୍ଣ—ପ୍ରକୃତ କହୁଛୁ ?

ନନ୍ଦକା—ସୁବର୍ଣ୍ଣ କେଶରୀ-ନନ୍ଦନୀ ନନ୍ଦକା, ମିଥ୍ୟା କହିବାକୁ ଜାଣେନାହିଁ, ପିତଃ ।

ସୁବର୍ଣ୍ଣ—ତେବେ ତୋର ପିତାକୁ ତୁ ଭଲ ପାଉନା ?

ନନ୍ଦକା—ମୋର ପିତାକୁ ମୁଁ ଭଲ ପାଏ ନାହିଁ ?

ସୁବର୍ଣ୍ଣ—(ସସ୍ମିତେ) ତେବେ ମୁଁ କେଉଁ କଥା ବିଶ୍ୱାସ କରିବ ?— ତୋର କଥାର ଯେ ତୁ ନିଜେ ପ୍ରତିବାଦ କରୁଛୁ ?

ନନ୍ଦିକା—ଅଚ୍ଛା, ପିତଃ ! ଆପଣ ମୋତେ ଭଲ ପାଅନ୍ତି ବୋଲି କଣ ଅନ୍ୟ କାହାରିକୁ ଭଲ ପାଅନ୍ତି ନାହିଁ ?

ସୁବର୍ଣ୍ଣ—ନନ୍ଦ ! ନନ୍ଦ ! ଏ କି ପ୍ରଶ୍ନ କରୁଛୁ ? ତୁ କଣ ତୋର ପିତାର ହୃଦୟ ଏ ପର୍ଯ୍ୟନ୍ତ ବୁଝି ପାରିନାହୁଁ ନନ୍ଦ ? ଏହି ହୃଦୟ ଯଦି ବିଚ୍ଛିନ୍ନ କରିବାର କ୍ଷମତା ଥାନ୍ତା, ତାହାହେଲେ ଦେଖାନ୍ତି—ଏପରି ତିଳେ ସ୍ଥାନ ସେଠାରେ ନାହିଁ, ଯାହା କି ତୋର ଅଧିକୃତ ନୁହେଁ ।

ନନ୍ଦିକା—ଅସମ୍ଭବ ।

ସୁବର୍ଣ୍ଣ—କ'ଣ ଅସମ୍ଭବ କହୁଛୁ, ନନ୍ଦ ?

ନନ୍ଦିକା—ପିତଃ ! ନିଶ୍ଚୟ ଆପଣ ଅତିରିକ୍ତ ସ୍ନେହ ମୋହରେ ଜ୍ଞାନ ଶୂନ୍ୟ ହୋଇଛନ୍ତି ।

ସୁବର୍ଣ୍ଣ—ନା, ନନ୍ଦ ! ତୁ କେବଳ ଦ୍ୱେଷୀ-ପ୍ରତି ଦୟାପରବଶ ହୋଇ ବିବେକ-ଶୂନ୍ୟ ହୋଇଛୁ ।

ନନ୍ଦିକା—ଅଚ୍ଛା, ପିତଃ ! ମୋର ଯେତେବେଳେ ଜନ୍ମ ହୋଇ ନ ଥିଲି, ସେତେବେଳେ କଣ ଆପଣ କାହାରିକୁ ଭଲ ପାଉ ନ ଥିଲେ ?

ସୁବର୍ଣ୍ଣ—ନନ୍ଦ ! ସେ ପୂର୍ବକଥା ମନେ ପକାନା—ତୋର ମା ଯେ ମୋର ହୃଦୟ ପୂର୍ଣ୍ଣ କରି ରହିଥିଲା । ( ଦୀର୍ଘ ନିଶ୍ୱାସ ତ୍ୟାଗ କରିବା )

ନନ୍ଦିକା—ଯେତେବେଳେ ବିବାହ କରି ନ ଥିଲେ ?

ସୁବର୍ଣ୍ଣ—ଆଜି ନନ୍ଦ ! କାହିଁକି ଏ ସବୁ ଅତୀତ-କଥା ମନେ ପକାଉଛୁ ?—ମୋର ପିତାମାତା ଯେ ମୋତେ କେତେ

ଅଦର ଯତ୍ନ କରୁଥିଲେ, ଆଜ ମୁଁ ଯେ ସେମାନଙ୍କୁ କେତେ ଭଲ ପାଉଥିଲି ତାହା ଏହି ଜହ୍ୱାରେ କି ବର୍ଣ୍ଣନା କରିବ ?

ନନ୍ଦକା—ବିବାହ ବେଳେ ପିତା ମାତା କଣ ବଞ୍ଚି ଥିଲେ ?

ସୁବର୍ଣ୍ଣ—ନିଜେ ଯେ ସେମାନେ ବିବାହ ଦେଇଥିଲେ—(ଦୀର୍ଘନିଶ୍ୱାସ ତ୍ୟାଗ କରିବା ) କିନ୍ତୁ ତା'ପୂର୍ବରେ ଅଳ୍ପଦିନ ଏ ସଂସାରରେ ଥିଲେ ।

ନନ୍ଦକା—ସେ କେତେଦିନ ନିଶ୍ଚୟ ସେମାନେ ବଡ଼ ଦୁଃଖରେ ଜୀବନ ଯାପନ କରିଥିବେ ।

ସୁବର୍ଣ୍ଣ—କାହିଁକି, ନନ୍ଦ ? ବରଂ ସେ କେତେଦିନ ପରମ ସୁଖରେ ଥିଲେ ।

ନନ୍ଦକା—କିପରି, ପିତାଃ ? ବିବାହ ଦ୍ୱାରା ନିଶ୍ଚୟ ସେମାନଙ୍କ ପ୍ରତି ଅପଣଙ୍କର ଅନୁରାଗ ହ୍ରାସ ପାଇଥିବ ।

ସୁବର୍ଣ୍ଣ—ହେଲେବା—ତଥାପି, ପିତା ମାତା କ'ଣ ପୁତ୍ରର ସୁଖ ଦେଖିବେ ନାହିଁ ? ପୁତ୍ରର ସୁଖ ଯେ ପିତା ମାତାର ପରମ ସୁଖ ।

ନନ୍ଦକା—ମୋର ପିତା ତେବେ ସ୍ୱାର୍ଥପର କାହିଁକି ?

ସୁବର୍ଣ୍ଣ—ସ୍ୱାର୍ଥପର ।

ନନ୍ଦକା—ନିଜ ମୁଖରେ ସ୍ୱୀକାର କଲେ କି ନା ଭାବି ଦେଖନ୍ତୁ ।

ସୁବର୍ଣ୍ଣ—(ନୀରବ )

ନନ୍ଦକା—ଆଜ, ଏକ ହୃଦୟରେ ଅପଣ ଏକରୁ ଅଧିକକୁ ଭଲ ପାଇଛନ୍ତି କି ନା, ଭାବି ଦେଖନ୍ତୁ । ମୋତେ ସମ୍ପୂର୍ଣ୍ଣ ହୃଦୟ ଦାନ କଲେ ସୁଦ୍ଧା ଅପଣଙ୍କ ପିତା ମାତା ଓ ପତ୍ନୀ ନିମନ୍ତେ ଅଦ୍ୟାପି କିଞ୍ଚିତ ହେଲେ ସ୍ଥାନ ରଖିଛନ୍ତି କି ନା ଚିନ୍ତାକରି ଦେଖନ୍ତୁ ।

ସୁବର୍ଣ୍ଣ—ନନ୍ଦ ! ନନ୍ଦ ! ତୁ ମୋତେ ଏତେ ତର୍କରେ ଅଣି ପକାଇ ଦେଲୁଣି ? କିନ୍ତୁ ଯଥାର୍ଥ କହୁଛୁ ନନ୍ଦ ! ତୋ ବିନା ଯେ ମୁଁ ଦଣ୍ଡେ ବଞ୍ଚି ପାରିବି ନାହିଁ ।

ନନ୍ଦିକା—ଛିଃ ବାବା, ପୁଣି ସେହି କଥା ?—ଏଇଥିପାଇଁତ କହୁଥିଲି ଅପଣ ଅନ୍ତରକୁ ସ୍ନେହର ମୋହରେ ଜ୍ଞାନଶୂନ୍ୟ ହୋଇଛନ୍ତି ।

ସୁବର୍ଣ୍ଣ—ତୋର କଥା ହେଲି, ନନ୍ଦ ! ମୁଁ ପ୍ରକୃତରେ ଜ୍ଞାନଶୂନ୍ୟ— ଅନ୍ଧ; ମାଏ ତୁହି ମୋର ଚକ୍ଷୁ—ତୁହି ମୋର ଜ୍ଞାନଦାୟିନୀ ।

ନନ୍ଦିକା—କ୍ଷମା କରନ୍ତୁ ପିତା, ଏ ଅଧମାକୁ ଏତେ ଉଚ୍ଚ ପଦ ଦିଅନ୍ତୁ ନାହିଁ—ଏ ଅଧମାକୁ କେବଳ ବିଶ୍ୱାସ କରନ୍ତୁ ।

ସୁବର୍ଣ୍ଣ—ତୋତେ କି କେବେ ଅବିଶ୍ୱାସ କରି ପାରେ, ମା ?

( କହ୍ଲାଦ ଓ ସେନାପତିର ପ୍ରବେଶ )

ନନ୍ଦିକା—ଏପରି ଦୃଢ଼ ବିଶ୍ୱାସର ଯେବେ ଏ ଅଧୀନା ଅଧିକାରିଣୀ ତେବେ ପ୍ରକୃତରେ ଜାଣନ୍ତୁ ପିତଃ ! ମନ୍ତ୍ରୀ ନିର୍ଦ୍ଦୋଷ ।

ସୁବର୍ଣ୍ଣ—ନିର୍ଦ୍ଦୋଷ !

ନନ୍ଦିକା—ନିର୍ଦ୍ଦୋଷ, ପିତଃ !

ସୁବର୍ଣ୍ଣ—ତେବେ କଣ ଏ ପତ୍ର ଜାଲ ?

ନନ୍ଦିକା—ଏକପ୍ରକାର ତାହାହିଁ !

ସୁବର୍ଣ୍ଣ—କିପରି ?

ନନ୍ଦିକା—କାରଣ ମୋର ମନୋଭାବହିଁ ଭାଷାରେ ଅନ୍ୟଦ୍ୱାରା ବ୍ୟକ୍ତ ହୋଇଛି ।

ସୁବର୍ଣ୍ଣ—(ଆଶ୍ଚର୍ଯ୍ୟଭାବେ ନନ୍ଦିକାକୁ ଚାହିଁ ରହିବା )

ନନ୍ଦକା—ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ, ପିତଃ ! ମୁଁ ଅନ୍ତରୁ କହୁଛି ଯେ କର୍ଣ୍ଣାଟାଧୀଶ୍ୱର ପ୍ରତି ମୋର ପ୍ରଗାଢ଼ାକର୍ଷଣ ଦେଖି ମନ୍ତ୍ରୀ ଏ କାର୍ଯ୍ୟ କରିଛନ୍ତି ।

ସୁବର୍ଣ୍ଣ—ତୁ ତୋର ପିତାର ଅବାଧ୍ୟ ହୋଇଥାନ୍ତୁ ?

ନନ୍ଦକା—ହେବାରତ କିଛି ବିଚିତ୍ରତା ନ ଥିଲା !

ସୁବର୍ଣ୍ଣ—ବୁଝିଛି ନନ୍ଦ ! ତୁ ମନ୍ତ୍ରୀଙ୍କ ନିର୍ଦ୍ଦୋଷ ପ୍ରମାଣ କରିବା ନିମନ୍ତେ ସମସ୍ତ ଦୋଷ ନିଜ ମସ୍ତକରେ ନେଉଛୁ ।—ଅଚ୍ଛା, ସେନାପତେ ! ନରାଧମକୁ ଗଳା ଧକ୍କା ଦେଇ ରାଜ୍ୟ ସୀମାରୁ ବାହାର କରିଦିଅ ।

ସେନାପତି—ଯଥା ଆଜ୍ଞା !

ନନ୍ଦକା—ସେନାପତେ ! ( କରୁଣ ନୟନରେ ଚାହିଁବା ), ପିତଃ !

ସୁବର୍ଣ୍ଣ—ନା ନନ୍ଦ ! ମୁଁ ଆଜି ତୋ କଥା କିଛି ଶୁଣିବି ନାହିଁ,— ତୋର ତର୍କ ଜାଲ ଭୟାନକ—ଆ' ମା, ମୋ ସଙ୍ଗେ ଆ' ।

ନନ୍ଦକା—ବାବା !

ସୁବର୍ଣ୍ଣ—ମାର୍ଜନା କରିବାକୁ ଚାହୁଁ ? ନା,ନା—ତାହାହେଲେ ଯେ ତୋ'ର ସର୍ବନାଶ ହେବ—ମୋର ସର୍ବନାଶ ହେବ । ଆ ମା ! (ପ୍ରସ୍ଥାନୋଦ୍ୟତ ଜାନୁ ନନ୍ଦକା ଲୁଣ୍ଠିତା ହେବା ) ଲୁଣ୍ଠିତା ହେଲୁ ଯେ ? ଦେଖା କରିବାକୁ ଚାହୁଁ ? ନା, ନା—ତୋତେ ଦେଖିବାକୁ ପର୍ଯ୍ୟନ୍ତ ଦେବି ନାହିଁ—ତାର ଦୃଷ୍ଟିରେ ଗରଳ ଅଛି—ଆ ମା, (ନନ୍ଦକା ତଥାପି ଲୁଣ୍ଠିତା ହୋଇ ରହିବା )— ପିତାର କଥା ଶୁଣ । (ଏଥର ନନ୍ଦକା ଗମନୋଦ୍ୟତା ହେବା ଓ ଉଭୟଙ୍କର ପ୍ରସ୍ଥାନ )

ବୀରେନ୍ଦ୍ର—ରକ୍ଷି ! ଯା ବନ୍ଦୀକୁ ମୁକ୍ତ କରି ଦେ—ଅଜି. କହି ଦେ 'ମହାରାଜାଙ୍କର ହୁକୁମ, ଆପଣ ନିର୍ବାସିତ'—(ସ୍ୱଗତ) ରାଜା-

ଧକକ୍କା ଦେଇ ବାହାର କରି ଦେବାଉ୍ଥା ମୋ ପକ୍ଷେ ଯନ୍ତ୍ରର ଦଣ୍ଡିବ ନାହିଁ । (ପ୍ରକାଶ୍ୟେ) ଯା, ଛୁଡ଼ା ହୋଇ ରହିଲୁ କାହିଁକି ? (ରକ୍ଷିର ପ୍ରସ୍ଥାନ) ନବଣାଗ୍ନୀ ମୋତେ ରକ୍ତ କଷାୟିତ ନେତ୍ରରେ ଚାହିଁଲା, ମାତ୍ର ମୋ ହୃଦୟରେ ଯେପରି ଫୁଲ ଶର ହାଣି ଦେଲା—ସୁନ୍ଦରୀ ମୋତେ ଭର୍ତ୍ସନା ସ୍ୱରରେ 'ସେନାପତି' ବୋଲି ସମ୍ବୋଧନ କଲା, ମାତ୍ର ମୋ କର୍ଣ୍ଣରେ ଯେପରି ସୁଧାରସ ଢାଳିଦେଲା—ଦିଅ, ଦିଅ ସୁନ୍ଦରୀ । ଯେତେ ଇଚ୍ଛା ପଦାଘାତ ପର୍ଯ୍ୟନ୍ତ ଦିଅ, ମୁଁ ଚନ୍ଦନ ଲେପନ ବୋଲି ଆନନ୍ଦରେ ଅଧୀର ହେବ—ତେବେ ଏତିକି ମାତ୍ର ଦୟାକର ସୁନ୍ଦରୀ, ତବ ଶ୍ରୀଚରଣ ପଙ୍କଜରେ ଏ ଅକିଞ୍ଚନ ଦୀନ ଦାସ ବୋଲି ଚିରଦିନ ସ୍ଥାନ ପାଏ !

( ରକ୍ଷୀର ପ୍ରବେଶ )

ରକ୍ଷୀ—ମୁକ୍ତ କରି ଦେଇଛି, ସେନାପତେ !

ବୀରେନ୍ଦ୍ର—ହୁକୁମ ଶୁଣାଇଛୁ ?

ରକ୍ଷୀ—ଆଜ୍ଞା ।

ବୀରେନ୍ଦ୍ର—କିଛି କହିଲେ ?

ରକ୍ଷୀ—କହିଲେ, "ତୋର ସେନାପତି ଦୀର୍ଘଜୀବୀ ହୁଅନ୍ତୁ !"

ବୀରେନ୍ଦ୍ର—ହୁଁ—କାହିଁ ଗଲେ ?

ରକ୍ଷୀ—ଛୁଡ଼ାତ ହୋଇଥିଲେ ।

ବୀରେନ୍ଦ୍ର—ଯା, ଦେଖ୍, କ'ଣ କରୁଛନ୍ତି ?

ରକ୍ଷୀ—ରାଜାଙ୍କର ହୁକୁମ ସେ କେବେ ଅମାନ୍ୟ କରିବେ ନାହିଁ—ମାତ୍ର ଏପରି ମନ୍ତ୍ରୀ ଆଉ ପାଇବା ନାହିଁ, ସେନାପତେ ।

( ରକ୍ଷୀର ପ୍ରସ୍ଥାନ )

ବୀରେନ୍ଦ୍ର—ଯା ! (ସ୍ୱ) ପ୍ରାଣବଧ ହୋଇଥିଲେ କଣ୍ଟକ ଏକାବେଳକେ ଦୂରୀଭୂତ ହୋଇଥାନ୍ତା—ଏ' ମଧ୍ୟ ମନ୍ଦ ଶାସ୍ତି ହୋଇନାହିଁ—ନିର୍ବାସନ, ଲୋକର ଜୀବନ୍ମୃତ୍ୟୁ ତୁଲ୍ୟ; ଯେ ହେତୁ, ଶତ୍ରୁ ଥାଇଁ ଥାଇଁ ଲୋକ ଶତ୍ରୁଶୂନ୍ୟ ହୋଇପଡ଼େ—ଅନ୍ତର ମଧ୍ୟ ମନ୍ତ୍ରୀ ଯେତେବେଳେ ଜାଣିପାରିବେ ଯେ ରାଜକୁମାରୀ ନନ୍ଦିତା ମୋତେ ବରମାଲ୍ୟ ଅର୍ପଣ କରିଛନ୍ତି, ସେତେବେଳେ ଯେଉଁ କଷ୍ଟ ସେ ଅନୁଭବ କରିବେ— ଯଦ୍ୟପି ତାଙ୍କୁ କଷ୍ଟଦେବା ମୋର ଇଚ୍ଛା ନୁହେ—ତାହା ମରଣରେ କଦାପି କରି ପାରି ନ ଥାନ୍ତେ !—ଦେଖ, ବୃଦ୍ଧ ! ତୋ'ର ଈପ୍ସିତ ଜାମାତା କପଟ ଅଟରେ ରାଜ-ଜାମାତା ହେଉଛନ୍ତି—ତୋ'ର ଅଶ୍ରଦ୍ଧ୍ୟବର୍ଦ୍ଧିତ ବୀର କପଟ ଔଦ୍ଧତ୍ୟର ଭାବୀ ଭାଗ୍ୟବିଧାତା ହେଉଛନ୍ତି ।

( ଶାରଦାର ବେଗେ ପ୍ରବେଶ )

ଶାରଦା—ଅସମ୍ଭବ, ବିଶ୍ୱାସଘାତକ ! ( ବୀରେନ୍ଦ୍ର ପ୍ରସ୍ଥାନୋଦ୍ୟତ ) ଶୁଣିଯା ହ, ପ୍ରତାରକ ! ଥରେ ଦେଖିଯା, ତୋ ଯୋଗୁଁ ଗୋଟିଏ କନ୍ୟା କପଟ ତା'ର ଜନ୍ମଦାତାକୁ ଜୀବନ୍ତ ସମାଧି ଦେଉଛି—ଥରେ ଶୁଣି ଯା, ତୋ' ଯୋଗୁଁ ଗୋଟିଏ ସଖୀ କପଟ ତା'ର ବାଲ୍ୟସଖୀର ସୁଖ ପଥରେ ପ୍ରଧାନ କଣ୍ଟକ ହୋଇଛି—ଥରେ ବୁଝି ଯା, ତୋ' ଯୋଗୁଁ ଗୋଟିଏ ସାମାନ୍ୟ ପ୍ରଜା କପଟ ସ୍ୱାଧୀନ ସାମ୍ରାଜ୍ୟର ଭବିଷ୍ୟତ୍ ଘୋର ଅନ୍ଧକାରରେ ଆଚ୍ଛନ୍ନ କରି ଦେଉଛି ।

ବୀରେନ୍ଦ୍ର—ଦୂର ହ' ପାଗଳି ! ( ପ୍ରସ୍ଥାନୋଦ୍ୟତ )

ଶାରଦା—( ବାଧାଦେଇ ) ପାଗଳ ମୁଁ ନୁହେଁ, ବିଶ୍ୱାସଘାତକ—
    ପାଗଳ ତୁମ୍ଭେ, ଯେଣୁ ବାମନ ହୋଇ ଚନ୍ଦ୍ରକୁ ଆଶା କରୁଛ ।

ବୀରେନ୍ଦ୍ର—ହିଂସା କର ନା, ଶାରଦା—ବାମନ ଆଜ ଚନ୍ଦ୍ର
    ଧରିବାକୁ ସକ୍ଷମ ହୋଇଛି ।

ଶାରଦା—ସକ୍ଷମ ହୋଇଛି ?

ବୀରେନ୍ଦ୍ର—ସକ୍ଷମ ହୋଇଛି କି ନା, କାର୍ଯ୍ୟରେ ଦେଖି ପାରିବୁ ।

ଶାରଦା—ସତେ ?—ତେବେ ତ ମୋର ଆନନ୍ଦ, ସ୍ୱାମୀ ସାମାନ୍ୟ
    ଉନ୍ନତ ହେଲେ ମଧ୍ୟ ସ୍ତ୍ରୀର ଯେ ମହାନନ୍ଦ ।

ବୀରେନ୍ଦ୍ର—ଦୂର ହ' କୁଳଟା—ପର ପୁରୁଷକୁ ସ୍ୱାମୀ ସମ୍ବୋଧନ
    କରିବାକୁ ଲଜ୍ଜା ହେଉନାହିଁ ?

ଶାରଦା—ପରସ୍ତ୍ରୀକୁ ସ୍ତ୍ରୀ ସମ୍ବୋଧନ କରିବାକୁ ଲଜ୍ଜା ହେଉନାହିଁ,
    ପ୍ରତାରକ ?

ବୀରେନ୍ଦ୍ର—ହାଃ, ହାଃ, ହାଃ, ଉଭୟେ ଯେ ଅବିବାହିତ ?

ଶାରଦା—ତୁ ଯେ ବିବାହିତ ।

ବୀରେନ୍ଦ୍ର—କା' ସଙ୍ଗେ ?

ଶାରଦା—ଯା' ସଙ୍ଗେ କଥା କହୁଛୁ—ଯା'କୁ ପ୍ରତାରଣା କରୁଛୁ—
    ଯା'ର ସର୍ବନାଶ କରୁଛୁ ।

ବୀରେନ୍ଦ୍ର—ହାଃ, ହାଃ, ହାଃ—ସେତ ପୂର୍ବକଥା । ଭୁଲିଯା, ଭୁଲିଯା
    ଶାରଦା, ସେତ ପୁରାତନ କଥା—ଆଜ ମୁଁ ଅଳ୍ପମତି ବାଳକ
    ନୁହେଁ କି ତୁ ମଧ୍ୟ ଜ୍ଞାନହୀନ ଶିଶୁ ନୋହୁ—ଉଭୟେ ବୁଦ୍ଧିମାନ
    ପ୍ରାପ୍ତ ବୟସ୍କ—ସେତ ଧୂଳିଖେଳ କି କାହାର ପକ୍ଷେ ଶୋଭା
    ପାଏ ?—ତୁ ତୋ'ର ପଥ ଅନ୍ୱେଷଣ କର—ମୁଁ ମୋର ପଥ
    ଅନ୍ୱେଷଣ କରେ ।                    (ବୀରେନ୍ଦ୍ରର ପ୍ରସ୍ଥାନ )

ଶାରଦା—ଏତେଦୂର ! ଏତେଦୂର । ସରଳ ବିଶ୍ୱାସର ଏହି ପୁରସ୍କାର—

(ବାସୁଦେବର ପ୍ରବେଶ)

ବାସୁଦେବ—ପ୍ରତିଶୋଧ ନେ, ଅଭାଗି । ପ୍ରତିଶୋଧ ନେ—ବୃଥା ଚିନ୍ତାରେ କାଳ ହରଣ ନିଷ୍ପ୍ରୟୋଜନ ।

ଶାରଦା—ବାବା, ବାବା ।

ବାସୁଦେବ—ଯେଉଁ ସରଳବିଶ୍ୱାସର ସୁଯୋଗ ନେଇ, ବିଶ୍ୱାସଘାତକ ଆଜି ତୋର ନିଜର ଓ ପିତାର ସର୍ବନାଶ—ସର୍ବୋପରି ତୋ'ର ସଖୀର ଓ ରାଜ୍ୟର ସର୍ବନାଶ କରୁଛି—ଠିକ୍ ସେହି ସରଳ ବିଶ୍ୱାସ, ସେହି ଅଚଳ ବିଶ୍ୱାସ ଅଚିରେ ବିଶ୍ୱାସଘାତକ ମନରେ ଜନ୍ମାଇ ଦେ, ସେହି ସୁଯୋଗରେ ତା'ର ସର୍ବନାଶ କର— ବିଶ୍ୱାସଘାତକତାର ଉପଯୁକ୍ତ ଶାସ୍ତି ପ୍ରଦାନ କର ।

ଶାରଦା—ବାବା, ବାବା, ଏ ଅଧମାକୁ କ୍ଷମା କର (ପଦଦ୍ୱୟ ଧାରଣ କରିବା )

ବାସୁଦେବ—କ୍ଷମା ? ଯା କହୁଛୁ, ମୂଢ଼ା ! ତା'ର କ୍ଷମା ନାହିଁ— ବିଶେଷତଃ, ବାସୁଦେବ ମନ୍ତ୍ରୀପକ୍ଷେ ତାହା ଏକାବେଳକେ ଅସମ୍ଭବ, ମାତ୍ର ସେ ଆଜି କ୍ଷମା କରୁଛି—ଯାଉଛି। ପୂର୍ବରୁ ତୋ'ର ପ୍ରାର୍ଥନା ପୂର୍ଣ୍ଣ କରୁଛି ।

( ଶାରଦାକୁ ଉଠାଇବା )

ଶାରଦା—ବାବା, ବାବା ।

ବାସୁଦେବ—ପ୍ରଥମେ ପ୍ରତିଜ୍ଞା କରିଥିଲି, ଶାରଦା, ତୋତେ ଉପଯୁକ୍ତ ଶାସ୍ତି ଦେବି—କଠୋର ଶାସ୍ତି ଦେବି—ଠିକ୍ ପର ମୁହୂର୍ତ୍ତେ କି ଜଗାଈଏ ତରଙ୍ଗ ଆସି ଧକ୍କା ଦେଲା, ବିଚଳିତ ହୋଇ

ସ୍ଥିର କଲି—ଦେଖା ନ ଦେଇ ଚୁଲି ଯିବ; ମାତ୍ର ଅବଶେଷରେ ପ୍ରବଳ ଝଟିକା ପ୍ରବାହରେ ହୃଦୟ କ୍ଷୁବ୍ଧ ବିକ୍ଷୁବ୍ଧ ହେବାକୁ ଲାଗିଲା, କୃପଣ ପରି ଉତ୍ତାଳ ତରଙ୍ଗାଘାତରେ ପ୍ରତିଜ୍ଞା ଏକା ବେଳକେ ଉନ୍ମୂଳିତ ହୋଇଗଲା—ଆଉ ମୁଁ ସ୍ଥିର ଥାଇ ନ ପାରି, ତୋ'ରଠାରେ ପୁଣି ଆଶ୍ରୟ ନେବାକୁ ଧାଇଁ ଆସିଲି ।

ଶାରଦା—ବାବା, ବାବା !

ବାସୁଦେବ—ମନେ ପଡ଼ିଗଲା, ମା, ତୋ'ର ସେହି ଶିଶୁ କମନୀୟ ବଦନ, ତୋର ସେହି ଶିଶୁ ସରଳ ହୃଦୟ—ସର୍ବୋପରି ତୋର ସେହି ଦୁଃଖିନୀ ଜନନୀର ଅନ୍ତିମ ଅଶ୍ରୁସିକ୍ତ ବାଣୀ "ଏହିଟି ମୋର ପବିତ୍ର ସ୍ମୃତି ଚିହ୍ନ"—ମା, ମା ତୁ ଶତ କଳଙ୍କରେ କଳଙ୍କିତ ହେଲେ ସୁଦ୍ଧା, ମୋ ଚକ୍ଷୁରେ ତୁ ନିଷ୍କଳଙ୍କ ଚନ୍ଦ୍ରମା ।

ଶାରଦା—ବାବା, ବାବା ! ଏତେ ଦୟା ! ଏତେ ସ୍ନେହ !—ହାୟ, ହାୟ, ଏ ଅଭାଗୀ କଳଙ୍କିନୀ ଅଜ କରିଛୁ, କଣ ? ଏ ଅମୂଲ୍ୟ ଦାନର କି ପ୍ରତିଦାନ ଦେଉଛୁ ?—ହାୟ ।

ବାସୁଦେବ—(ବାଧାଦେଇ) ଯା ଘଟିବାରତ ଘଟିଛୁ, ଶାରଦା, ସେ ସବୁ କଥା ଚିନ୍ତାରେ କାଳକ୍ଷେପ କରିବା ବର୍ତ୍ତମାନ କର୍ତ୍ତବ୍ୟ ନୁହେଁ—ଅମ୍ଭମାନଙ୍କର ପ୍ରଧାନ କର୍ତ୍ତବ୍ୟ, ଅଧୁନା କେଉଁ ଉପାୟରେ ଜେମାଦେଇ ଚୌରଙ୍ଗଙ୍କ ସଙ୍ଗେ ମିଳିତା ହେବେ--ଭାବୀ ଦୁର୍ଦ୍ଦଶା ଗ୍ରାସରୁ ରାଜ୍ୟ ରକ୍ଷା ପାଇବ—ମାତ୍ର ସେ ବିଷୟରେ ଚେଷ୍ଟା କରିବା ପୂର୍ବରୁ ସେନାପତି ବିଶ୍ୱାସ ଘାତକତାର ଉପଯୁକ୍ତ ଶାସ୍ତି ପାଇବା ଆବଶ୍ୟକ, ନଚେତ୍ ଅମ୍ଭମାନଙ୍କର ଉଦ୍ଦେଶ୍ୟ ପୁଣି ପଣ୍ଡ ହେବାର ସମ୍ଭାବନା ।

ଶାରଦା—ଏ ସବୁ କାହର ହେବ, ବାବା ? ତୁମ୍ଭେ ଯେ ନିର୍ବାସିତ ।

ବାସୁଦେବ—ତୋ'ର ଦ୍ୱାରା ସମସ୍ତ ସାଧିତ ହେବ, ମା ।

ଶାରଦା—ବାବା !

ବାସୁଦେବ—କିଛି ଭୟ ନାହିଁ, ମା । ମୁଁ ବୁଝିପାରୁଛି, ତୋର ଶିଶୁ ସରଳତା ଭାଙ୍ଗିଯାଇଛି—ମନରେ ଦୃଢ଼ତା ଆସିଛି—ବର୍ତ୍ତମାନ ତୋତେ ସମ୍ପୂର୍ଣ୍ଣ ବିଶ୍ୱାସ କରିଯାଇ ପାରେ—ତୋ'ର ଦ୍ୱାରା ହିଁ ଏ' କାର୍ଯ୍ୟ ସାଧିତ ହେବ—ଆ ମା ! ରାଜାଙ୍କ ପାଳନରେ ମୋର ବିଳମ୍ବ ଘଟୁଛି—ତୋତେ କାହର କଣ କରିବାକୁ ହେବ, ତା ଶିଖାଇ ଦେବି । ଏ ଜନ୍ମଭୂମି—(ଟିକିଏ ରହି) ନା—ଜନ୍ମଭୂମି ମୋତେ ତ୍ୟାଗକରୁ ପଛକେ, ଶରଣପାଇଁ ସ୍ଥାନ ନଦେଉ ପଛକେ—କିନ୍ତୁ ଜନ୍ମଭୂମି ମୋର—ଜନ୍ମଭୂମିର କଲ୍ୟାଣ ସାଧନ ମୋର ମହାବ୍ରତ—ଏକମାତ୍ର ବ୍ରତ ।

(ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

[ କର୍ଣ୍ଣାଟ ରାଜଭବନ ]

ଭୈରବଗଙ୍ଗ—ମନ୍ତ୍ରି, ଆଜ ବିଳମ୍ବ କାହିଁକି ?—ଦୂତଠାରୁ ଆମ୍ଭମାନଙ୍କର ଅପମାନର ବିଷୟ ଆମୂଳ ଚୂଳ ଶୁଣିଲ—ଏଥିରେ କି ଅପମାନିତ ସିଂହ କେବେ ପ୍ରତିଶୋଧ ନ ନେଇ ରହିପାରେ ?

ମନ୍ତ୍ରୀ—ମହାରାଜ ବିଗ୍ଭର କରି କାର୍ଯ୍ୟ କରିବା ଉଚିତ ।

ଭୈରବଗଙ୍ଗ—ଆଉ କି ବିଗ୍ଭର କରିବ ମନ୍ତ୍ରି ? ଆମ୍ଭର ଦୂତ ଗଲା, ତାକୁ ଆଦର ସମ୍ମାନ ନାହିଁ, ଥରେ ଦେଖା ବି ଦେଲେ ନାହିଁ—ଜଣେ ବୃଦ୍ଧ ଆମ୍ଭର ପକ୍ଷ ସମର୍ଥନ କରି ଯୁକ୍ତିସଙ୍ଗତ ଦି ପଦ କହିଲା ବୋଲି ପ୍ରାଣ ଦଣ୍ଡରେ ଦଣ୍ଡିତ ହେଲା—ଏଥିଠୁ ବଳି ଆମ୍ଭମାନଙ୍କ ପ୍ରତି ଆଉ କି ଅଧିକତର ଅପମାନ ହୋଇ ପାରେ ?

ମନ୍ତ୍ରୀ—ଏ ସବୁ ଅପମାନ ପ୍ରତିଶୋଧ କଣ ତାଙ୍କର ରାଜ୍ୟ ଆକ୍ରମଣ କରିବା ?

ଭୈରବଗଙ୍ଗ—ରାଜା କଣ ଏହାଠାରୁ ଭଲ ଭାବେ ରାଜାର ପ୍ରତିଶୋଧ ନିଏ ନାହିଁ, ମନ୍ତ୍ରି ?

ମନ୍ତ୍ରୀ—ବାତୁଳ ସେ ରାଜା, ଯେ ଏପରି ଭାବେ ପ୍ରତିଶୋଧ କାମନା କରେ । ଜଣକର ସ୍ୱାର୍ଥସିଦ୍ଧି ନିମନ୍ତେ ଲକ୍ଷ ଲକ୍ଷ ପ୍ରାଣ ବଳି ଦିଆଯିବ ସିନା ।

ଭୈରବଗଙ୍ଗ—ଏ ପାପ ଆମ୍ଭକୁ କଦାପି ସ୍ପର୍ଶ କରିବ ନାହିଁ, ମନ୍ତ୍ରି ।

ମନ୍ତ୍ରୀ—ଉଭୟ ପକ୍ଷକୁ ସ୍ପର୍ଶ କରିବ ମହାରାଜ । ଯେହେତୁ ଉଭୟେ ସ୍ୱାର୍ଥାନ୍ଧ—ସ୍ୱାର୍ଥସିଦ୍ଧି ନିମନ୍ତେ ଉଭୟେ ଲକ୍ଷ ଲକ୍ଷ ନିରୀହ ପ୍ରାଣୀ ବଧ କରିବାକୁ ଉଦ୍ୟତ ।

ଗୌରଗଙ୍ଗ—ତେବେ ତୁମ୍ଭ ମତରେ କିପରି ଭାବେ ଅପମାନର ପ୍ରତିଶୋଧ ନେବା ଉଚିତ ?

ମନ୍ତ୍ରୀ—ମୁଣ୍ଡ ନାହିଁତ ମୁଣ୍ଡ ବଥେଇବାର ଔଷଧର କି ପ୍ରୟୋଜନ, ମହାରାଜ ? ଆମ୍ଭେ ବିବାହ ପ୍ରସ୍ତାବ କରି ପଠାଇଥିଲୁ, ସେ ଅସମ୍ମତ ହେଲେ—ଆମ୍ଭେ ଭିକ୍ଷା ମାଗି ପଠେଇ ଥିଲୁ ସେ ଦେଲେ ନାହିଁ—ଏଥିରେ ଆଉ ଅପମାନ କଣ ?

ଗୌରଗଙ୍ଗ—ଅଚ୍ଛା ବେଶ, 'ଦେଲେ ନାହିଁ' ତ ଅପମାନ କ'ଣ—ମାତ୍ର ଦୂତକୁ ଦେଖା ନ ଦେବା—ଅନ୍ୟ ନିମନ୍ତେ ଗୋଟିଏ ବୃଦ୍ଧକୁ ବିନା ଦୋଷରେ ପ୍ରାଣ ଦଣ୍ଡ ଦେବା—କେଉଁ ସମ୍ମାନର ବିଷୟ ? ଅନ୍ତର କ'ଣ ଆଦୌ ଆତ୍ମସମ୍ମାନ ଜ୍ଞାନ ନାହିଁ ?

ମନ୍ତ୍ରୀ—ଏପରି ଆଚରଣ ନିଶ୍ଚୟ ତାଙ୍କର ଅମନୁଷ୍ୟତ୍ୱର ଓ ଅସଭ୍ୟତାର ପରିଚୟସୂଚକ, ମାତ୍ର ସେଥିଯୋଗୁଁ ଆମ୍ଭେମାନେ ଅମନୁଷ୍ୟ ଓ ଅସଭ୍ୟ ହେବାକୁ ଯିବା କାହିଁକି, ମହାରାଜ ?

ଗୌରଗଙ୍ଗ—ଏ' କିପରି ନୂତନ କଥା, ମନ୍ତ୍ରି । ହିଂସାର ପ୍ରତିହିଂସା ନେବା କି କ୍ଷତ୍ରିୟର ଧର୍ମ ନୁହେଁ ? ପୁଣି କ୍ଷତ୍ରିୟ ଯେଉଁ ରମଣୀକୁ କାମନା କରେ ତା'କୁ ବଳ ପୂର୍ବକ ବିବାହ କରିବାର କି ବିଧି ନାହିଁ ?

ମନ୍ତ୍ରୀ—କେଉଁ କାଳେ ଥିଲା—ବର୍ତ୍ତମାନ କିନ୍ତୁ ଏ'ପରି ଆଚରଣ କ୍ଷତ୍ରିୟ ଶକ୍ତିର ଅପବ୍ୟବହାର ମାତ୍ର । ନୈତିକ ଦୃଷ୍ଟିରେ ଥରେ ବିଚାର କରି ଦେଖନ୍ତୁ, ଏହା କି କ୍ଷତ୍ରିୟ ଶକ୍ତିର ଗୌରବ ?

ଗୈରବଗଙ୍ଗ—ଏ ନୂତନ ମନ୍ତ୍ରଣା କାହୁଁ ଶିଖିଲ, ମନ୍ତ୍ରି ? ଯେପରି ଦେଖୁଛି ତୁମ ମତରେ ଯୁଦ୍ଧ ମଧ୍ୟ କ୍ଷତ୍ରିୟ ପକ୍ଷେ ଏକାନ୍ତ ଅନୁଚିତ ।

ମନ୍ତ୍ରୀ—ନିଶ୍ଚୟ ଅନୁଚିତ ମହାରାଜ ।

ଗୈରବଗଙ୍ଗ—ତୁମ୍ଭମାନଙ୍କର ଧର୍ମନୈତିକ ଦୃଷ୍ଟିରେ ହୋଇପାରେ—ମାତ୍ର ରାଜନୈତିକ ଦୃଷ୍ଟିରେ କଦାପି ନୁହେଁ ।

ମନ୍ତ୍ରୀ—ଉଭୟତଃ ଅନୁଚିତ, ମହାରାଜ ।

ଗୈରବଗଙ୍ଗ—ଶିଷ୍ଟର ପାଳନ ନିମନ୍ତେ ଦୁଷ୍ଟର ଦଳନ ତେବେ କିପରି କରାଯିବ ମନ୍ତ୍ରି ?

ମନ୍ତ୍ରୀ—କେବଳ ପାଶବିକ ଶକ୍ତିର ପ୍ରୟୋଗରେ କି କରାଯାଇ ପାରେ ?

ଗୈରବଗଙ୍ଗ—ଅନ୍ୟ ଉପାୟ, ନାହିଁ ବୋଲି—

ମନ୍ତ୍ରୀ—ଉପାୟ ଅବଶ୍ୟ ଅଛି, ମାତ୍ର ଆମ୍ଭମାନଙ୍କର ସେ ହୃଦୟ ସେ ଉଦାରତା ମଧ୍ୟ ନାହିଁ ।

ଗୈରବଗଙ୍ଗ—କିପରି ?

ମନ୍ତ୍ରୀ—ଚୈତନ୍ୟଦେବ ଓ ନିତ୍ୟାନନ୍ଦ ପ୍ରଭୁଙ୍କ କଥା ଥରେ ସ୍ମରଣ କରନ୍ତୁ, କେଉଁ ବଳରେ ଜଗାଇ ମାଧାଇ ପରି ଦୁର୍ଜନଙ୍କୁ ସେମାନେ ଦମନ କରିଥିଲେ ?

ଗୈରବଗଙ୍ଗ—ସେ ଧର୍ମନୀତି କଥା କାହିଁକି ? ରାଜନୀତି କଥା କୁହ ।

ମନ୍ତ୍ରୀ—ମହାରାଜ । ଆପଣ କଣ ମନେ କରନ୍ତି ରାଜନୀତି ଓ ଧର୍ମନୀତି ପୃଥକ୍ ? କଦାପି ନୁହେଁ, ମହାରାଜ । ଧର୍ମ ବ୍ୟତୀତ ରାଜନୀତି ତିଷ୍ଠିବା ଏକାବେଳେ ଅସମ୍ଭବ ।

ଗୈରବଗଙ୍ଗ—ମନ୍ତ୍ରି । ଏ'ପରି ଉଚ୍ଚ କଥା ଓ ଉଦାର ଭାବ କଥାରେ ସହଜ ମାତ୍ର କାର୍ଯ୍ୟରେ ଅସମ୍ଭବ ।

ମନ୍ତ୍ରୀ—ଏହିପରି ଅସମ୍ଭବହିଁ କ୍ରମେ ସମ୍ଭବ ହୋଇ ଆସୁଛି, ମହାରାଜ ! କେତେ କେତେ ଜଟିଳ ବିଷୟ ଯାମିନୀର ଘୋର ଅନ୍ଧକାରରେ ଅଚ୍ଛନ୍ନ ଥିଲା, ବର୍ତ୍ତମାନ ଊଷାର ଅଳ୍ପାଲୋକରେ ପ୍ରତୀୟମାନ ହେବାକୁ ଲାଗିଲାଣି—ଆଉ ଯେଉଁ ଯେଉଁ ବିଷୟମାନ ଅଦ୍ୟାପି ଲୁକ୍କାୟିତ ଅଛି ତାହାର ସୂର୍ଯ୍ୟାଲୋକରେ ଅଚିରେ ପ୍ରକାଶିତ ହେବ । ଦେଖନ୍ତୁ ମହାରାଜ ! ଯେଉଁ ପାଶବିକ ବଳକୁ କ୍ଷତ୍ରିୟମାନେ ପ୍ରଧାନ ବଳ ବୋଲି ଜ୍ଞାନ କରି ଆସୁଥିଲେ, ସେ ବଳ ଅଧୁନା ସୁସଭ୍ୟ ମନୁଷ୍ୟ ସମାଜରେ ହେୟ, ଘୃଣ୍ୟ ଶକ୍ତି ବୋଲି ପରିଗଣିତ ହେଲାଣି । କେତେଟା କ୍ଷତ୍ରିୟ ଯୁବକ ପୂର୍ବପର ଅପରାର ପାଶବିକ ଶକ୍ତିରେ ଚୋନ୍ନତ ହୋଇ ପରିଣୟାକୁ—ଅସ୍ତ୍ର ବିନାନ୍ଧଳ ରୂପଯୌବନ ସମ୍ପନ୍ନା ହେଲେ ମଧ୍ୟ, "ବୀରର ଏକାନ୍ତ ବାଞ୍ଛନୀୟ" ହେଲେ ମଧ୍ୟ—ବଳ ପୂର୍ବକ ସ୍ୱପତ୍ନୀ କରିବା ନିମନ୍ତେ ଧାବମାନ ହେଉଛନ୍ତି ? କେତେଜଣ କ୍ଷତ୍ରିୟ ରାଜା, ରାଜ୍ୟ ଲାଳସାରେ ଅନ୍ଧ ହୋଇ ନିଜର ଅସୁରିକ ଶକ୍ତି ପ୍ରୟୋଗରେ କେବଳ, ନୀତିପରାୟଣ ସମାଜ ଚକ୍ଷୁରେ ଧୂଳି ନିକ୍ଷେପ କରି, ଅତୀବ ହୀନଶକ୍ତି ରାଜାର ମଧ୍ୟ ରାଜ୍ୟ ଓ ସ୍ୱାଧୀନତାପହରଣରେ ସକ୍ଷମ ହେଉଛନ୍ତି ? ଅଳ୍ପ ଦିନପରେ ଦେଖିବେ, ମହାରାଜ ! ଅପମାନର ଗୁରୁତର କାରଣ ଥିବା ସତ୍ତ୍ୱେ ଏକ ରାଜା କେବେ ଅପର ରାଜାର ରାଜ୍ୟ ନାଶଦ୍ୱାରା ଅପମାନର ପ୍ରତିଶୋଧ ନେବ ନାହିଁ-ଘୋର ବିବାଦରେ ଲିପ୍ତଜ୍ଞାନ ହୋଇ ସୁଦ୍ଧା ମନୁଷ୍ୟ କେବେ ଅସ୍ତ୍ର ପ୍ରୟୋଗ ଦ୍ୱାରା କନ୍ଦଳର ମୀମାଂସା କରିବାକୁ ଉତ୍କଣ୍ଠିତ ହେବନାହିଁ ; ଦୋଷୀ ନିଜ ଦୋଷସକାଶେ ଲଜ୍ଜିତ ଓ ଅନୁତପ୍ତ ହେବ—ଦଣ୍ଡଦାତା

ଏହି ମହାଭାବରେ ଅନୁପ୍ରାଣିତ ହୋଇ 'କ୍ଷମାହିଁ ପରମ ଧର୍ମ' ଆଚରଣ କରିବେ । ସମସ୍ତେ 'ମୁଁ, ସେ ସମାନ'—'ମୋର, ତାର ସମାନ'—ସମସ୍ତେ ଏକ ମାତା ପିତାର ସନ୍ତାନ' ଜ୍ଞାନରେ ପାପପଙ୍କିଳଙ୍କୁ ସ୍ୱର୍ଗଧାମରେ ପରିଣତ କରିଦେବେ ।

ଗୈର—ଦନ୍ତି ! ଏ' କଳ୍ପିତ ଯୁଗର କଥା—ଏତେ ଦୂର ଉଦାରତା ଏ' ଯୁଗରେ ଅସମ୍ଭବ । ବର୍ତ୍ତମାନ ସେନାପତିଙ୍କୁ ସୈନ୍ୟ ସଜ୍ଜା ନିମନ୍ତେ ଶୀଘ୍ର ଆଦେଶ ଦିଅ—ଉତ୍କଳ ଆକ୍ରମଣର ଯଥାବିଧି ଆୟୋଜନ କର;—ଯୁଦ୍ଧ ଦ୍ୱାରାହିଁ ଅପମାନର ପ୍ରତିଶୋଧ ନେବାକୁ ହେବ—ପ୍ରତିହିଂସା ଦ୍ୱାରାହିଁ କର୍ଣ୍ଣାଟର ମାନ ରକ୍ଷା କରିବାକୁ ହେବ, ଲଘୁହେଉ ଗୁରୁ ହେଉ ଅପମାନ ଅସହ୍ୟ—କର୍ଣ୍ଣାଟରାଜ ପକ୍ଷେ ନିତାନ୍ତ ଅସହ୍ୟ ।

ମନ୍ତ୍ରୀ—ରାଣୀମାଙ୍କର ମତ ଥରେ ବୁଝିବାର ଉଚିତ ନୁହେ କି ?

ଗୈର—ରାଣୀମାଙ୍କ ମତ ! (ସ୍ୱଗତ) ମାଙ୍କ-ଆଦେଶ ନ ନେଇ ମୁଁ ତ କୌଣସି କାର୍ଯ୍ୟ କରେ ନାହିଁ—(ପ୍ରକାଶ୍ୟ) ଅଚ୍ଛା ମୁଁ ବୁଝିବି—କିଛି ଭୟ ନାହିଁ, ତୁମ୍ଭେ ନିଜେ ବୁଝି ଆସିପାର ।

(ମନ୍ତ୍ରୀର ପ୍ରସ୍ଥାନ)

ମା ନିଶ୍ଚୟ ମତ ଦେବେ—ତାଙ୍କର ଏକାନ୍ତ ଅଭିଳାଷ, ସେହି କନ୍ୟାଯାଚଞ୍ଚା ଦ୍ୱାରା ସେ କାମନା ପୂର୍ଣ୍ଣ ହେଲନାହିଁ—ଅନ୍ୟ ଉପାୟରେ ନିଶ୍ଚୟ ମୋତେ ପୂର୍ଣ୍ଣ କରିବାକୁ ଆଦେଶ ଦେବେ । କି ଆନନ୍ଦ !—ଯୁଦ୍ଧ ! ଯୁଦ୍ଧ, କ୍ଷତ୍ରିୟର ଏକମାତ୍ର ଆନନ୍ଦ । ଦୀର୍ଘ କାଳପରେ ଗୋଟିଏ ସୁଯୋଗ ମିଳିଛି—ଛାଡ଼ିବାର କଦାପି ଉଚିତ ନୁହେଁ—ଅପମାନ ଗୁରୁ ହେଉ ଲଘୁ ହେଉ, ଜନ୍ମା ଅବୈ ନ ହେଉ, ମୋତେ ଘୋର ଅପମାନିତ ବୋଲି ସର୍ବ ସମ୍ମୁଖରେ ପ୍ରଚାର କରିବାକୁ

ହେବ—ସୈନ୍ୟମାନଙ୍କ ଉତ୍ତେଜିତ ଓ ଯୁଦ୍ଧୋନ୍ମତ୍ତ କରିବାକୁ ହେବ !—ଯୁଦ୍ଧ—ଯୁଦ୍ଧ—ବିବାହ ମୋର ଏତେବେଳର ଉଦ୍ଦେଶ୍ୟ ନୁହେଁ, ଯେତେବେଳର 'ଉଦ୍ଦେଶ୍ୟ ଯୁଦ୍ଧ—ଯୁଦ୍ଧ—ଯୁଦ୍ଧ, ତେଣିକି ବରଞ୍ଚ—ଚନ୍ଦ୍ରକୁ ଚନ୍ଦ୍ରିକା । (ସ୍ୱେରଙ୍ଗ ପ୍ରସ୍ଥାନୋଦ୍ୟତ, ଦୂତର ପ୍ରବେଶ)

ଦୂତ—ମହାରାଜ ! ଓଡ଼ିଶାମନ୍ତ୍ରୀ ବାସୁଦେବ ଦର୍ଶନ ପ୍ରାର୍ଥନା କରୁଛନ୍ତି ।

ସ୍ୱେର—ଓଡ଼ିଶା ମନ୍ତ୍ରୀ ବାସୁଦେବ ! ସେ ପରା ପ୍ରାଣଦଣ୍ଡରେ ଦଣ୍ଡିତ ହୋଇଥିଲେ ?

ଦୂତ—ସେ ଦଣ୍ଡ ରହିତ ହୋଇ, ନିର୍ବାସନ-ଦଣ୍ଡରେ ପରିବର୍ତ୍ତିତ ହୋଇଛି ।

ସ୍ୱେର—ତେବେ ନିଶ୍ଚୟ ସେ ମୋର ଆଶ୍ରୟ ଓ ସହାୟ ପ୍ରାର୍ଥନା କରିବାକୁ ଆସିଛନ୍ତି । ମହାନନ୍ଦ—ମହାନନ୍ଦ—ମା ଅସନ୍ତୁଷ୍ଟ ହେଲେ ମଧ୍ୟ ଚିନ୍ତା ନାହିଁ—ନିରାଶ୍ରୟ, ଉତ୍ପୀଡ଼ିତ ନିମନ୍ତେ ଷର୍ବସ୍ୱ ସର୍ବସ୍ୱାନ୍ତ ହେଲେ ମଧ୍ୟ ଜଗତରେ ନିନ୍ଦନୀୟ ନୁହେଁ— ଯାଅ, ଦୂତ ! ତାଙ୍କୁ ସାଦରେ ଶୀଘ୍ର ଏଠାକୁ ଘେନି ଆସ । (ଦୂତର ପ୍ରସ୍ଥାନ) ଯୁଦ୍ଧ ! ଯୁଦ୍ଧ !—ମହାନନ୍ଦ ! ମହାନନ୍ଦ !

(ବାସୁଦେବଙ୍କର ପ୍ରବେଶ ଓ ଅଭିବାଦନ)

ଆସ ମନ୍ତ୍ରି, ତୁମ୍ଭର କୌଣସି ଭୟନାହିଁ—ଆଜଠାରୁ ଏହି ରାଜପ୍ରାସାଦ ତୁମ୍ଭର ଗୁପ୍ତସ୍ଥାନ—ଭର୍ତ୍ତ୍ୟଧ୍ୱଜ ତୁମ୍ଭର ଶରୀର ରକ୍ଷକ ।

ବାସୁଦେବ—ଧନ୍ୟ ମହାରାଜ ! ଏ ଜନ ଦାସ ପ୍ରତି ଏତେ ଦୟା ! ଅଯାଚିତ ଭାବେ ଏତେଦୂର ରାଜାନୁଗ୍ରହ ଲାଭ କରିବା ଏ ଦୀନ ଦାସର ପରମ ସୌଭାଗ୍ୟ ।

ଗ୍ରୈର—ଏ' ଷଡ଼ିଯନ୍ତ୍ରାଧୀନର ମଧ୍ୟ ପରମ ସୌଭାଗ୍ୟ ଯେ, ଉତ୍କଳବାସୀ ନିଃସହାୟ ନିବ୍ରଶ୍ରଯ଼ଙ୍କୁ ଅଶ୍ରୟ ଦେଇ ପାରୁଛି । ମୁଁ ତୁମ୍ଭ ବାସସ୍ଥରେ ଦୂତ ମୁଖରୁ ସମସ୍ତ ଶୁଣିଛି । ଅମ୍ଭ ନିମନ୍ତେ ତୁମ୍ଭେ ଯେଉଁ ଗଞ୍ଜନା ଲାଞ୍ଛନା ସହୁଛ ତାହା ଅମ୍ଭମାନଙ୍କୁ ଏକାନ୍ତ ଅସହ୍ୟ ବୋଧ ହୋଇ'ଛି—ତୁମ୍ଭେ ନ ଆସିଥିଲେ ମଧ୍ୟ, ଓଡ଼ିଶା ଅଧିପତିଙ୍କର ଅପମାନକାରୀଙ୍କୁ ଆମ୍ଭେ ଉପଯୁକ୍ତ ଶାସ୍ତି ଦେବାକୁ ପ୍ରସ୍ତୁତ ଥିଲୁଁ ।

ବାସୁଦେବ—ଏ'ତ ସମସ୍ତ ରାଜ୍ୟପ୍ରତି ଦଣ୍ଡବିଧାନ ହେବ, ମହାରାଜ !

ଗ୍ରୈର—ଏଥି ନିମନ୍ତେ କି ଅମ୍ଭେ ଦାୟୀ ?

ବାସୁଦେବ—ରାଜନୈତିକ କଥା ଛାଡ଼ିଦେଲେ ଆମ୍ଭେ ତ ବିବେକୀ, ମନୁଷ୍ୟ ।

ଗ୍ରୈର—ତେବେ ତୁମ୍ଭେ କଣ ଚାହଁ ?

ବାସୁଦେବ—ମହାରାଜ ! ଏ' ଅକିଞ୍ଚନ ଗୋଟିଏ ଦାସାନୁଦାସ—ସାମାନ୍ୟ ପ୍ରଜା; ସୁତରାଂ ବ୍ୟକ୍ତିଗତ ଅପମାନ ବା ଅନିଷ୍ଟର ପ୍ରତିଶୋଧେଚ୍ଛାରେ ଗୋଟିଏ ବିଶାଳ ରାଜ୍ୟାଧୀଶ୍ୱରଙ୍କ ବିରୁଦ୍ଧେ, ଲକ୍ଷଲକ୍ଷ ପ୍ରଜାପାଳକଙ୍କ ବିରୁଦ୍ଧରେ ନିଜେ ଅଗ୍ରସର ହେବାକୁ କିମ୍ବା ଅନ୍ୟ କାହାରିକୁ ଉତ୍ତେଜିତ କରିବାକୁ ଅନ୍ୟାୟ ମନେକରେ—ମହାପାପ ଜ୍ଞାନ କରେ ।

ଗ୍ରୈର—ତେବେ ମୋ ନିକଟକୁ ଆସିବାର ଅଭିପ୍ରାୟ ?

ବାସୁଦେବ—ଆପଣ ଜଣେ ସର୍ବଗୁଣାଲଙ୍କୃତ, ଉଦାରାଶୟ ରାଜା, ଶ୍ରୀକ୍ଷେତ୍ରରେ ଦର୍ଶନମାନେ ଯାହାଙ୍କର ହୃଦୟପ୍ରଣିଭା ସମ୍ୟକ୍ ବିଦିତ ହୋଇଛନ୍ତି । ବର୍ତ୍ତମାନ ଆପଣ ଏକମାତ୍ର ଭରସା—ଏକମାତ୍ର କର୍ଣ୍ଣଧାର, ଦୁଷ୍ଟ ଅରାଜକତା ଗ୍ରାସରୁ ଓଡ଼ିଶାକୁ ରକ୍ଷାକରିବା ନିମନ୍ତେ ଏକମାତ୍ର ଉପଯୁକ୍ତ ବୀର !

ଶ୍ରୈବ—ଏ' ପୁଣି କି କଥା କହୁଛ ? ତୁମ୍ଭେ କଣ ପ୍ରଭୁଭକ୍ତିର ଛଳନା କରୁଥିଲ ?

ବାସୁଦେବ—ନା' ମହାରଜ ! ଛଳନା ଏ' କୃଦ୍ଧ ପକ୍ଷେ ଅସମ୍ଭବ—ରାଜଦ୍ରୋହିତା ଏ' ରାଜଭକ୍ତ ପକ୍ଷେ ମହାପାପ । ଏ' ଦୀନ ଦାସ ଆଜ ପ୍ରଭୁଙ୍କର ବାରୁଦ୍ଧେ ଅଗ୍ରସର ହେଉନାହିଁ—ମହାରାଜାଙ୍କ ବିପକ୍ଷେ ଅସ୍ତ୍ର ଧାରଣ କରୁନାହିଁ—ଅଗ୍ରସର ହେଉଛି, ସର୍ବବଧ ମାହାତ୍ମ୍ୟ ଓ ରକ୍ଷା ଦେନ ଅଗ୍ରସର ହେଉଛି, ପ୍ରଭୁଙ୍କର ଖିଆଲ ବାରୁଦ୍ଧେ, ମହାରାଜାଙ୍କ ସ୍ୱେଚ୍ଛାଚାରିତା ବାରୁଦ୍ଧେ ।

ଶ୍ରୈବ—ଏକା କଥା ମନ୍ତ୍ରି । ଏକା କଥା ।

ବାସୁଦେବ—କିପରି, ମହାରାଜ ? ପ୍ରଥମ ଭାବରେ ବ୍ୟକ୍ତିଗତ ସ୍ୱାର୍ଥ ରହୁଛି, ଦ୍ୱିତୀୟ ଭାବରେ ସାଧାରଣ ସ୍ୱାର୍ଥ—ସାଧାରଣ ସ୍ୱାର୍ଥ ନିମନ୍ତେ କାର୍ଯ୍ୟ କରିବା ଓ ନିଜ ସ୍ୱାର୍ଥ ନିମନ୍ତେ କାର୍ଯ୍ୟ କରିବା କଦାପି ଏକା କଥା ନୁହେଁ, ସମ୍ପୂର୍ଣ୍ଣ ଭିନ୍ନ । ଗୋଟିକରେ ସ୍ୱର୍ଗ ଅନ୍ୟଟିରେ ନରକ—ଗୋଟିକରେ ସୁଧା, ଅନ୍ୟଟିରେ ଗରଳ ।

ଶ୍ରୈବ—ଅଚ୍ଛା ! ମହାରାଜାଙ୍କର କି ସ୍ୱେଚ୍ଛାଚାରିତା ବାରୁଦ୍ଧେ ଅଗ୍ରସର ହେବାକୁ ଚାହଁ ?

ବାସୁଦେବ—ଶୁଣନ୍ତୁ ତେବେ, ମହାରାଜ । ମହାରାଜ ସୁବର୍ଣ୍ଣ କେଶରୀ ବାର୍ଦ୍ଧକ୍ୟ ଜନିତ ଖେୟାଲ ବଶତଃ ହେଉ ବା ଅତିରିକ୍ତ ସ୍ନେହ କାରଣରୁ ହେଉ, ତାଙ୍କର କନ୍ୟାକୁ ବିବାହ ଦେବା ନିମନ୍ତେ ଏକାନ୍ତ ଅନିଚ୍ଛୁକ—ନାନା ଯୁକ୍ତିତର୍କ ଓ ଉପଦେଶ ସତ୍ତ୍ୱେ ସେ ସମ୍ପୂର୍ଣ୍ଣ ଅସମ୍ମତ । ଏହି କନ୍ୟା ତାଙ୍କର ସନ୍ତାନ ଓ ଉତ୍ତରାଧିକାରିଣୀ । ସେ ବର୍ତ୍ତମାନ ପ୍ରାପ୍ତବୟସ୍କା ଓ ବିବାହ ହେବାର ଉପଯୁକ୍ତା । ପିତୃ ଇଚ୍ଛାରେ କୁମାରୀ ରହିବା ଆପତ୍ତି ଜନକ ନ ହେଲେ ସୁଦ୍ଧା, ରାଜନୀତି ହିସାବରେ

ଘୋର ଅପତ୍ତି ଜନକ; ଯେ ହେତୁ, ସୁବର୍ଣ୍ଣରେଖାଙ୍କ
ଅନ୍ତେ ଉତ୍କଳ ନାଃସହାୟ ଓ ଶତ୍ରୁଶୂନ୍ୟ ନେହବା ସୁନିଶ୍ଚୟ ।
ସ୍ୱତରାଂ, ଏକମାତ୍ର ଉପାୟ, ବଜ-ବୁଦ୍ଧିତା ଯେପରେ ସତ୍ପାତ୍ରରେ
ଅର୍ପିତ ହୁଅନ୍ତି; ଏହି ହେତୁ ମୋର ଏଠାକୁ ଆଗମନ ।

ଗୌର—ଆମ୍ଭଙ୍କୁ କେବେ ଭଣ କରିବାକୁ କହୁଛ ?—ଅମ୍ଭେତ
ପ୍ରସ୍ତାବ ପଠାଇ ଥିଲୁ ।

ବାସୁଦେବ—ଅନୁଗ୍ରହରେ ପଠାନ୍ତୁ, ଏତିକି ପ୍ରାର୍ଥନା !

ଗୌର—ଆଜ୍ଞା ଥରେ !

ବାସୁଦେବ—ପ୍ରଣୟ ଦୃଷ୍ଟିରେ କହୁଛି ମହାରାଜ !—ଉଭୟେ
ପରସ୍ପର ପ୍ରତି ଅନୁରକ୍ତ ଜାଣି, ଏ’ କଥା କହିବାକୁ ସାହସ
କରୁଛି, ମହାରାଜ !

ଗୌର—ମନ୍ତ୍ରୀ ! କ୍ଷତ୍ରିୟ କଣ ଏତେ ଦୁର୍ବଳ ? ସାମାନ୍ୟ ଗୋଟିଏ ନାରୀ
ପ୍ରତି ଅନୁରକ୍ତ ବୋଲି, ନିଜର ମାନ, ସମ୍ଭ୍ରମ ଜଳାଞ୍ଜଳି ଦେବାକୁ
କୁଣ୍ଠିତ ହେବ ନାହିଁ ? ଥରେ ଯାଚଞ୍ଚା କରିଥିଲି, ଅବନତ
ହୋଇଥିଲି—ବେଶ୍ ପ୍ରତିଫଳ ପାଇଛି—ଯଥେଷ୍ଟ ଅପମାନିତ
ହୋଇଛି ! ବର୍ତ୍ତମାନ କାହିଁ ସେ ଅପମାନର ପ୍ରତିଶୋଧ ନେବ,
ନା ପୁନର୍ବାର ଅବନତ ହେବାକୁ ଯିବ—ପୁନର୍ବାର ଅପମାନିତ
ହେବାକୁ ଯିବ ?

ବାସୁ—(ସ୍ୱଗତ) ଉଭୟ ସଙ୍କଟ । ଜଣେ ବାର୍ଦ୍ଧକ୍ୟ ହେତୁ ଭ୍ରମାନ୍ଧ
ଜଣେ ଯୌବନ ହେତୁ ଉଦ୍ଧତ ।

( ସୁଭଦ୍ରାର ମନ୍ତ୍ରୀସହ ପ୍ରବେଶ )

ମନ୍ତ୍ରୀ—ଗୌରବ ଭର କାର୍ଯ୍ୟ କରନ୍ତୁ ମା । କାହିଁ ଉତ୍କଳ ପରି
ସୁବିଶାଳରାଜ୍ୟ, କାହିଁ କର୍ଣ୍ଣାଟପରି କ୍ଷୁଦ୍ରରାଜ୍ୟ—ପ୍ରତିଦ୍ୱନ୍ଦ୍ୱିତାରେ
କି ଅମ୍ଭେମାନେ ସମର୍ଥ ହେବୁଁ, ମହାରାଣୀ ?

ସୁଭଦ୍ରା—ମୁଁ କିଛି ଶୁଣିବାକୁ ଚାହେଁନାହିଁ, ପ୍ରତିଶୋଧ ନିଅ—ଏଥିରେ ଯେବେ ମୃତ୍ୟୁଘଟେ—ରାଜ୍ୟ ଛାରଖାରରେ ଯାଏ, ସେ ଶ୍ରେୟସ୍କର। ପ୍ରତିଶୋଧ ନିଅ—କନ୍ୟା ପିତାର ଏତେ ଗର୍ବ। ଆମ୍ଭଙ୍କ ଭିକ୍ଷୁକ ଠାରୁ ତୁଚ୍ଛ ଜ୍ଞାନ କଲା, ତୁତକୁ ଦେଖା ଦେବାର ଦୂରେ ଥାଉ ଅପମାନ କରି ତଡ଼ିଦେଲା। ଦୂତକୁ ଅପମାନ କଲାନାହିଁ ସେ ଆମ୍ଭଙ୍କୁ ଅପମାନ କଲା; ପୁଣି ଦେଖ, କି ନିଷ୍ଠୁରତା—ଜଣେ ବୃଦ୍ଧ, ନିଜର ମନ୍ତ୍ରୀ ଆମ୍ଭ ପକ୍ଷ ଘେନି ଦୁଇପଦ କହିଥିଲା ବୋଲି, ପ୍ରାଣ ଦଣ୍ଡରେ ଦଣ୍ଡିତ ହେଲା। ଏତେ ଗର୍ବ। ଏତେ ଅହଙ୍କାର! ପ୍ରତିଶୋଧ ନିଅ—ପ୍ରତିଶୋଧ ନିଅ!

ବୈରୂ—(ସ୍ୱଗତ) ମହାନନ୍ଦ! (ପ୍ରକାଶ୍ୟେ) ମା କିଛି ଚିନ୍ତା କର ନାହିଁ, ତୁମ୍ଭର ଅଧମ ସନ୍ତାନ ତୁମ୍ଭର ମନସ୍କାମନା ନିଶ୍ଚୟ ପୂର୍ଣ୍ଣ କରିବ।

ସୁଭଦ୍ରା—ତୁ ଯେବେ ମୋର ପ୍ରକୃତ ସନ୍ତାନ ହୋଇଥାଉ—ଗଙ୍ଗବଂଶର ନିର୍ମଳରକ୍ତ ଯେବେ ତୋର ଧମନୀରେ ପ୍ରକୃତ ଖେଳୁଥାଏ—ତେବେ ପ୍ରତିଜ୍ଞାକର, ମାତୃ ଅପମାନର ପ୍ରତିଶୋଧ, ଓଡ଼ିଶା ଧ୍ୱଂସ—କର୍ଣ୍ଣାଟ ଅପମାନର ପ୍ରତିଶୋଧ, ଓଡ଼ିଶା ଜେମାର ପରିଣୟ!

ବୈରୂ—ଶ୍ରୀଚରଣସ୍ପର୍ଶ କରି (ପାଦଧରିବା) ପ୍ରତିଜ୍ଞା କରୁଛି, ମା! ମୋର ମନସ୍କାମନା ନିଶ୍ଚୟ ପୂର୍ଣ୍ଣ କରିବ!

ସୁଭଦ୍ରା—ଏ' କିଏ? (ବାସୁଦେବଙ୍କୁ ଦେଖି, ବାସୁଦେବ ଅଭିବାଦନ କରିବା)

ଗୌର—ଏହି ସେହି ଓଡ଼ିଶା-ରାଜମନ୍ତ୍ରୀ—ନାମ ବାସୁଦେବ, ଯେକି ଆମ୍ଭପକ୍ଷ ନେଇ ରାଜାଙ୍କୁ କହିଥିଲେ । ସୌଭାଗ୍ୟକ୍ରମେ ପ୍ରାଣ-ଦଣ୍ଡରେ ଦଣ୍ଡିତ ନ ହୋଇ, ନିର୍ବାସିତ ହୋଇଛନ୍ତି ।

ସୁଭଦ୍ରା—ହାୟ ! ପର ସକାଶେ କେତେ ଯନ୍ତ୍ରଣା ଭୋଗ କରିବାକୁ ହେଲା ! ବର୍ତ୍ତମାନ ସବୁ ଭୁଲି ଯାଆନ୍ତୁ ମହାଶୟ, ଏ' ଦୀନ ଭବନକୁ ନିଜର ଘର ବୋଲି ମନେ କରନ୍ତୁ ।

ବାସୁ—ଏହି ଉଦାରତା ନିମନ୍ତେ ଶତକୋଟି ଧନ୍ୟବାଦ ଗ୍ରହଣ କରନ୍ତୁ, ମହାରାଣି ।

ସୁଭଦ୍ରା—ଆମ୍ଭର କର୍ତ୍ତବ୍ୟ ଆମ୍ଭେ କରୁଛୁଁ, ମହାଶୟ ! ବର୍ତ୍ତମାନ କହନ୍ତୁ, କିପରିଭାବେ ଅପମାନର ପ୍ରତିଶୋଧ ନେଲେ ଆପଣଙ୍କର ମନସ୍କାମନା ପୂର୍ଣ୍ଣ ହେବ ?

ବାସୁ—ମହାରାଣି !

ଗୌର—(ବାଧାଦେଇ) ସେ ଭାରି ପ୍ରଭୁଭକ୍ତ, ମାଁ—ଏତେ ଦୂର ଯେ, ପ୍ରଭୁଙ୍କ ବିରୁଦ୍ଧରେ କୌଣସି ପ୍ରକାର ଚିନ୍ତା କରିବାକୁ ମଧ୍ୟ ପାପ ମନେ କରନ୍ତି ।

ସୁଭଦ୍ରା—ତା' ସ୍ୱାଭାବିକ ।

ଗୌର—କିନ୍ତୁ,

ସୁଭଦ୍ରା—କିନ୍ତୁ କଣ ?

ଗୌର—ସେ ମଧ୍ୟ ରାଜ୍ୟ ପର ଗୃହାନ୍ତ ଯେ, ଓଡ଼ିଶାଦେବୀ କର୍ଣ୍ଣାଟର ବଧୂରୂପେ ଆଗମନ କରନ୍ତୁ ।

ସୁଭଦ୍ରା—ସାଧୁ ଉଦ୍ଦେଶ୍ୟକୁ ଆପଣଙ୍କର ଧନ୍ୟବାଦ ମହାଶୟ ! ଆଜିଠାରୁ ଆପଣ କର୍ଣ୍ଣାଟର ଅନ୍ୟତମ ମନ୍ତ୍ରୀହେଲେ—ଉଭୟ ମନ୍ତ୍ରୀଙ୍କର ସାହାଯ୍ୟରେ ଆମ୍ଭର ଉଦ୍ଦେଶ୍ୟ ସଫଳ ହେଉ ! ଜୟ ଗଙ୍ଗାମାଈଙ୍କ ଜୟ ।

ଶ୍ରେର ଓ ମନ୍ତ୍ରୀ—ଜୟ ଟଙ୍ଗାମାଈଙ୍କ ଜୟ ।

ସୁଭଦ୍ରା—ଆ ପୁନ—ଯାଅ ମନ୍ତ୍ରୀ, ତୁମ୍ଭର ଭାଇଙ୍କର ପରିଚର୍ଯ୍ୟା କର ।

ଶ୍ରେର—(ସ୍ୱଗତ) ମହାନନ୍ଦ । ଯୁଦ୍ଧ ! (ସୁଭଦ୍ରା ଓ ଶ୍ରେରଙ୍ଗଙ୍କର ପ୍ରସ୍ଥାନ )

ମନ୍ତ୍ରୀ—ଆସ ଭାଇ ।

ବାସୁଦେବ—(ସ୍ୱଗତ) ଉଭୟ ଶଙ୍କଟ । (ଦୀର୍ଘ ନିଶ୍ୱାସ ତ୍ୟାଗକରିବା)
[ମନ୍ତ୍ରୀ ଓ ବାସୁଦେବର ପ୍ରସ୍ଥାନ ]

---

## ତୃତୀୟ ଦୃଶ୍ୟ

( କକ୍ଷ )

( ଶୀରେନ୍ଦ୍ରର ଚନ୍ତିତ ଭାବରେ ପ୍ରବେଶ )

ଶୀରେନ୍ଦ୍ର—ପଥଭ ପରିଷ୍କାର ହେଲା, ମାତ୍ର କି ଉପାୟରେ ଉଦ୍ଦେଶ୍ୟ ସଫଳ କରୁଛି ? ରାଜାଙ୍କ ଇଚ୍ଛାରେ କେବେ ପ୍ରସ୍ତାବ ପଠାଇବେ ନାହିଁ—କେମିତେବେଛି କଣ ଇଚ୍ଛା ପ୍ରକାଶ କରିବେ ନାହିଁ ? ସେ ଦିନର ମାର୍ତ୍ତଣ୍ଡର ପ୍ରଚଣ୍ଡ ତାପ ଦେଖି ଭୟ ହେଉଛି, ମାତ୍ର ପରେ ପରେ ବର୍ଷାର ଶୀତଳ ଧାରାରେ ପ୍ରଶମିତ ହେବାର ଆଶା ହେଉଛି । ଆଚ୍ଛା, ଏ ଚେହେରା, ଏ ପରିପାଟି ଦେଖି କଣ ସେ ମୁଗ୍ଧ ହୋଇ ନାହାନ୍ତି ? ଶାବଦ୍ଧାଟା ପରା ଟଗୋଇଠା ଖାଇ ଝୁଙ୍କା ଅଠାପରି ଲାଗି ରହିଥିଲା । ଏ ଚେହେରାରେ ନିଶ୍ଚୟ ଗୋଟିଏ ଆକର୍ଷଣୀ ଶକ୍ତି ଅଛି—ଏ ଭାବଭଙ୍ଗୀରେ ନିଶ୍ଚୟ ଗୋଟାଏ ମାଦକତା ଅଛି; ଥରେ ଖାଲି ଭଲ କରି ଦେଖାଇବାର ସୁଯୋଗ ପାଇଲେ ହେଲା—ରସରସିଆ ମନ ଝୁରିଆ କଥା ଶୁଣାଇବାର ସୁବିଧା ପାଇଲେ ହେଲା—ଚୁମ୍ବକ ପରି ପରା ଟାଣି ଆଣିବ; କିନ୍ତୁ କି ଉପାୟରେ ସୁବିଧାଟା ପାଉଛି ? (ଭାବନା)

[ ନେପଥ୍ୟେ ଗୀତ—
ଅଭିଳିକା ଶୁଣିବା ପରାଣେ ମୋହିବ ]

କିଏ ଗୀତ ଗାଉଛି ? ଦାଋ । ଗଳାରେ ହାତଦେଇ ବାହାର କରିଦେ, ଗୋଳମାଳ କରିବାକୁ କଣ ସ୍ଥାନ ମିଳୁନାହିଁ ?—ଙ୍କ ଉପାୟରେ ସୁଯୋଗ ମିଳିବ ? (ଭାବନା)

[ ନେପଥ୍ୟେ ପ୍ରନସ୍ୱୟ ଗୀତ ]

ବୀରେନ୍ଦ୍ର—( ସକ୍ରୋଧେ ) ଦ୍ୱାରୀ । ( ଦ୍ୱାରୀର ପ୍ରବେଶ )

ଦ୍ୱାରୀ—ଯେତେ ମନାକଲେ ସେ ଆଦୌ ଶୁଣୁନାହିଁ, ସାଅନ୍ତେ ।

ବୀରେନ୍ଦ୍ର—ତୋର କଣ ହାତ ନାହିଁ ?

ଦ୍ୱାରୀ—ମାଡଖୁବ ବୃଥ୍ୟ କରୁନାହିଁ, କହୁଛି "ଭକ୍ତ ନନ୍ଦଅ ପଛକେ, ସାଅନ୍ତଙ୍କ ସଙ୍ଗେ ଥରେ ଦେଖା କରାଇ ଦଅ" ।

ବୀରେନ୍ଦ୍ର—ଏପର କିଏ ସେ ଭିକାରୀ

ଦ୍ୱାରୀ—ଗୋଟିଏ ଯୁବତୀ ବୈଷ୍ଣବୀ—ଗୁରୁ ଛଅ ଦିନ ହେଲା ଏ ସହରକୁ ଆସିଛି—ଭଲ ଗୀତ ଗାଏ ବୋଲି ସମସ୍ତେ ଘର ଭଲପାନ୍ତି—ନଅରକୁ ମଧ୍ୟ ଯା'ଆସ କରେ ।

ବୀରେନ୍ଦ୍ର—ନଅରକୁ ଯା ଆସ କରେ ?

ଦ୍ୱାରୀ—ଆଜ୍ଞା ହଇତ, ମାଅନ୍ତେ ।

ବୀରେନ୍ଦ୍ର—ହଉ । ବୈଷ୍ଣବୀର ଗଳାତ ମନ୍ଦ ନୁହେଁ—ଅଚ୍ଛା ଡାକି ଆଣିଲୁ, ଗୋଟିଏ ଅଧେ ଶୁଣିବା ।

ଦ୍ୱାରୀ—ଯେ ଆଜ୍ଞା ।

ବୀରେନ୍ଦ୍ର—ହଠାତ୍ ମନରେ ଏ'କି ଉଲ୍ଲାସ ଜାତ ହେଉଛି ? ଅଶା ଅଶ୍ୱାସ ହେଉଛି, ଏ' ବୈଷ୍ଣବୀଦ୍ୱାରା ଯେପରି ମୋର ମନସ୍କାମନା ପୂର୍ଣ୍ଣ ହେବ । ( ବୈଷ୍ଣବୀର ପ୍ରବେଶ )

ବୈଷ୍ଣବୀ—'ରାଧେକୃଷ୍ଣ' ।

ବୀରେନ୍ଦ୍ର—( ଅସ୍ଫୁଟ ଭାବେ ରୂହିଁ ରହିବା ) (ପ୍ରକାଶ) ଚିହ୍ନା ଚିହ୍ନା ବୋଧ ହେଉଛି କିପରି ?

ବୈଷ୍ଣବୀ—ରାଧେକୃଷ୍ଣ । (ଗୀତ ଗାଇଲେ) ଅଜ୍ କି ଶୁଣିବ…

ବୀରେନ୍ଦ୍ର—ପ୍ରଣାମ, ବୈଷ୍ଣବ ।

ବୈଷ୍ଣବୀ—ଯୁଗଳ ପ୍ରେମ ଲଭକର ।

ବୀରେନ୍ଦ୍ର—(ସ୍ୱଗତ) ବାଃ ! ବେଶ ଅଶୀର୍ବାଦତ ! ( ପ୍ରକାଶ୍ୟେ )
ଅପଣଙ୍କ ନିବାସ କେଉଁଠି ?

ବୈଷ୍ଣବୀ—ରାଧାର ନିବାସ, ସେଇ ରସରାଜଙ୍କ ହୃଦକୁଞ୍ଜ ଛଡ଼ା
ଅନ୍ୟ କେଉଁଠି ହୋଇ ପାରେ ?

( ଗୀତ )

ଆଜିକି ଶୁଣିବ, ପରାଣ ମୋହିବ
ସେ ମୋହନ ମୁରଲୀ ମଧୁର ଗାନେ ?
ନୟନେ ଦେଖିବ, ହୃଦରେ ଲେଖିବ
ସେ ଶ୍ୟାମସୁନ୍ଦର ଜଗତ ପ୍ରାଣେ ।

ବୀରେନ୍ଦ୍ର—( ସ୍ୱଗତ ) ବେଶ ରସିକା ତ ? ଅପଣ ଦେଖୁଛି ଭାରି
ପ୍ରେମିକା !

ବୈଷ୍ଣବୀ—ମାନ୍ଧ ପ୍ରେମିକ ଚୂଡ଼ାମଣି ଛଡ଼ା ରାଧା ପ୍ରେମ ବୁଝିବାର
କ୍ଷମତା ଅନ୍ୟ କା'ର ଅଛି ?

( ଗୀତ )

ରାଧାର ପୀରତି, ରାଧାର ସୁରତି,
ପ୍ରେମିକ ବିନା କେ ବୁଝିବ ଅନ ?

ବୀରେନ୍ଦ୍ର—( ସ୍ୱଗତଃ ) ନିଶ୍ଚୟ ଏ' ବଧୂ ପ୍ରେରତା । (ପ୍ରକାଶ୍ୟେ)
ଆପଣ କ'ଣ ବାଲ୍ୟକାଳରୁ ବୈଷ୍ଣବୀ ?

ବୈଷ୍ଣବୀ—ସେକଥା ଆଉ ପଚାରନ୍ତୁ ନାହିଁ—ସେ ଶଠ ଲମ୍ପଟ କଣ
ଘରେ ରହିବାକୁ ଦେଲେ ?

( ଗୀତ )

ସେ ଯେ ବଡ଼ ଶଠ, କପଟ ଲମ୍ପଟ,
ଘରେ ମୋତେ ଟଳେ ଦେଲା କି ସ୍ଥାନ ?

ବୀରେନ୍ଦ୍ର—( ସ୍ୱଗତ ) କି ସୌଭାଗ୍ୟ ମୋର ! ( ପ୍ରକାଶ୍ୟେ ) ଆପଣ କ'ଣ 'ଭିକ୍ଷା' ବର୍ତ୍ତମାନ ଜୀବିକାର ଏକମାତ୍ର ଉପାୟ ଅବଲମ୍ବନ କରିଛନ୍ତି ?

ବୈଷ୍ଣବୀ—କ'ଣ କରିବ, ନିରୁପାୟ ବୋଲି । ସେହି ଗୌର ଚନ୍ଦ୍ରାମଣି ପରି ମୋର ଅନ୍ୟ ସବୁ ଉପାୟ ଗ୍ରୀସ୍‌କରି ନେଲେ ।

( ଗୀତ )

ନିରୁପାୟ କରି ଦଲ ଗୋ ଭିକାରୀ,
ଗୌର ଚନ୍ଦ୍ରାମଣି ସେ ଗୌର ଜାଣି ।

ବୀରେନ୍ଦ୍ର—( ସ୍ୱଗତ ) କି ଅନନ୍ଦ । ( ପ୍ରକାଶ୍ୟେ ) ଅଛି ମୁଁ ଯଦି ଉପାୟ କରି ଦଏଁ ।

ବୈଷ୍ଣବୀ—କି ଉପାୟ ?—ମିଳନୋପାୟ କରିଦେବେ ? ପାରିବେତ ? ଯେବେ ପାରନ୍ତି, ମୁଁ ଅନ୍ତରର ସହିତ ଆଶୀର୍ବାଦ କରିବି, ଆପଣ ଅଚିରେ ଯୁଗଳ ପ୍ରେମ ଲାଭ କରିବେ ।

( ଗୀତ )

ଭେଟାଇଣ ଦେଲେ, କାହିଁ ସେ କହିଲେ,
ଲଭିବ ଯୁଗଳ ପ୍ରେମ ହେ ପ୍ରାଣେ ।

ବୀରେନ୍ଦ୍ର—ବୈଷ୍ଣବ । ଏ ଦୀନ ଅକିଞ୍ଚନର କି ଏତେ ସୌଭାଗ୍ୟ ହେବ ଯେ, ସେ ଅଚିରେ ଯୁଗଳ ପ୍ରେମ ଲାଭ କରିବ ?

ବୈଷ୍ଣବୀ—ଭୟ କାହିଁକି ? ବାଟରେ କଣ ଚନ୍ଦ୍ରାବଳୀର ବାଧା ଅଛି ?

ବୀରେନ୍ଦ୍ର—( ସ୍ୱଗତ ) ମନର ଭାବ ବେଶ ବୁଝିଛନ୍ତି—ରସିକା କିନା ? ( ପ୍ରକାଶ୍ୟେ ) ଥିଲା, ମାତ୍ର ଆପଣଙ୍କ ଆଶୀର୍ବାଦରେ ସେ ଭୟ ଅଉ ନାହିଁ, କିନ୍ତୁ—

ବୈଷ୍ଣବୀ—କିନ୍ତୁ କଣ ?

ବୀରେନ୍ଦ୍ର—ଦୂତୀ ପାଇଲେ ତ ?

ବୈଷ୍ଣବୀ—ରାଧାର କୁଞ୍ଜ ଜାଣିଲେ ଦୂତୀର କ'ଣ ଅଭାବ ହେବ ?

ବୀରେନ୍ଦ୍ର—( ସ୍ୱଗତ ) ମହାନନ୍ଦ ! ( ପ୍ରକାଶ୍ୟେ ) ଆସ ତେବେ ମୁଁ କୁଞ୍ଜର ସନ୍ଧାନ କହି ଦେଉଛି ।

ବୈଷ୍ଣବୀ—ଚଳନ୍ତୁ !

( ପୂର୍ବ ଗୀତର ପୁନରାବୃତ୍ତି )

ଆଉ କି ଶୁଣିବ, ପରାଣ ମୋହିବ
  ସେ ମୋହନ ମୁରଲୀ ମଧୁର ଗାନେ ?
ନୟନେ ଦେଖିବ, ହୃଦୟେ ଲେଖିବ
  ସେ ଶ୍ୟାମସୁନ୍ଦର ଜଗତ ପ୍ରାଣେ ॥

( ଉଭୟଙ୍କର ପ୍ରସ୍ଥାନ )

---

## ଚତୁର୍ଥ ଦୃଶ୍ୟ

[ବୃଷ୍ଟବର୍ଣ୍ଣୀ ତୀର]

(ନନ୍ଦକା ଚନ୍ତିତା ଭାବେ ଉପବେଶନ କରିଥିବା)

ନନ୍ଦକା—କି ଉପାୟ କରୁଛନ୍ତି ? ଶାରଦା ଯେପରି କହୁଥିବ, ଦୁତ ତ ପୁନର୍ବାର ବିବାହ ପ୍ରସ୍ତାବ ନେଇ ଆସିବ ? ବାପୁଙ୍କର ଯେତେ-ବେଳେ ଜ୍ୱର ଧରିଛନ୍ତି, ସେ କି ଆଉ ଗୁଡ଼ିବାର ପାନ ? ହାୟ, କାହିଁକି ମୁଁ କନ୍ୟା ହୋଇ ଜନ୍ମ ହେଲି ? ପୁତ୍ର ହୋଇଥିଲେ ଆଜି ତାହାଙ୍କୁ କୌଣସି କ୍ଳେଶ ଦେଇ ନ ଥାନ୍ତି ।—ଅଚ୍ଛା, ନାରୀ କ'ଣ ପୁରୁଷ ପରି କାର୍ଯ୍ୟ କରି ପାରେ ନାହିଁ ? ନାରୀ ନର ମଧ୍ୟରେ ସୃଷ୍ଟି କୌଶଳର କିଞ୍ଚିତ ବୈଷମ୍ୟ ଥିଲେ ମଧ୍ୟ ଉଭୟେ ତ ସମାନ ଦୋଷ ଗୁଣ ବିଶିଷ୍ଟ; ସୁତରାଂ ମୁଁ ଚେଷ୍ଟା କଲେ କ'ଣ ରାଜ୍ୟ ଶାସନ କରି ପାରିବି ନାହିଁ ?

( ଚନ୍ତିତ ଭାବେ ବସି ରହିବା)

(ସଖିମାନଙ୍କର ଗୀତ ଗାଇ ଗାଇ ପ୍ରବେଶ)

—ଗୀତ—

କିମ୍ପା ବିଷାଦିନୀ କହଲୋ ରଙ୍ଗିନୀ ।
କିମ୍ପା ତୋ ଅଧରେ ନାହିଁ ହସରେଖା ।
ବଦନ ଶୁଖିଛି, କେଶ ଝାଉଁଳିଛି,
ସର୍ବାଙ୍ଗେ କାଳିମା ଦେଉଛି ଦେଖା ।
ଫୁଟିଅଛୁ ତୁହି ରାଜ ଉପବନେ,
ରାଜ ଭୋଗ ତୋର ସଦା ଶ୍ରୀଚରଣେ,
ଝୁଲୁଛୁ ସୁମନେ ଦକ୍ଷିଣା ପବନେ,
ମୋହିତ ପରଶେ ଅଳିର ଗୁଞ୍ଜନେ
କି ହେଲା, କିମ୍ପାଇ ନାହିଁ ହସ ମନେ ?
ଭାଲେକି ତୋହର ଚେଳଲା ଦୁଃଖରେଖା ।

ନନ୍ଦକା—ତୁମ୍ଭେମାନେ ଏଠାକୁ ପୁଣି କାହିଁକି ଅସିଲ ?

୧ମ ସଖୀ—ମଣିମାଙ୍କ ହୁକୁମ ଯେ ଜେମାଦେଈଙ୍କୁ ଅମେମାନେ ଏକୁଟିଆ କାହିଁ ରହିବାକୁ ଦେବୁଁ ନାହିଁ ।

ନନ୍ଦକା—ତା'ହେଲେ ମୁଁ ଯାଉଛି, ଘରେ କବାଟ କିଳ ରହିବ ।

(ଦଣ୍ଡାୟମାନା ହୋଇ ପ୍ରସ୍ଥାନୋଦ୍ୟତା)

ସମସ୍ତେ—ନା, ଜେମାଦେଈ । ସେପର କରନା ।

ବୈଷ୍ଣବୀ—(ନେପଥ୍ୟ) ସ୍ୱଧେକୃଷ୍ଣ !

୨ୟ ସଖୀ—ଏହି ଯେ, ସେହି ବୈଷ୍ଣବୀ ଆସିଲଣି ।

୩ୟ ସଖୀ—ଦେଈ ତା'ର ଗୀତ ଅଉ କଥାବାର୍ତ୍ତା ଶୁଣିବାକୁ ଭଲପାନ୍ତି ।

୧ମ ସଖୀ—ଚାଲ ତେବେ, ଦେଈଙ୍କ ମନ ଭୁଲେଇବାକୁ ଯେ କେହି ଜଣେ ହେଲେ ରହିଲେ ହେଲା ।     (ସଖିମାନଙ୍କର ପ୍ରସ୍ଥାନ)

( ବୈଷ୍ଣବୀର ପ୍ରବେଶ )

ବୈଷ୍ଣବୀ—ସ୍ୱଧେକୃଷ୍ଣ ! ଭିକ ମୁଠେ ମିଳୁ ?

ନନ୍ଦକା—ଏତେ ସକାଳୁ ଭିକ ମିଳିବ ନାହିଁ ।

ବୈଷ୍ଣବୀ—(ଧୀରେ) ଦର୍ଶନତ ମିଳିବ ?

ନନ୍ଦକା—ସକାଳୁ ଭିକାରୁଣୀ ମୁହଁଟା କିଏ ଚାହିଁବ ଲୋ ?

ବୈଷ୍ଣବୀ—(ଦୀର୍ଘନିଶ୍ୱାସ ଛାଡ଼ି) ଭିକାରୁଣୀଟାକୁ ତେବେ କ'ଣ ଛାଡ଼ି ଦେଉଛ ?

ନନ୍ଦକା—ବାଧ ହୋଇ !

ବୈଷ୍ଣବୀ—ହଉ, ସ୍ୱଧେକୃଷ୍ଣ ।                    ( ପ୍ରସ୍ଥାନୋଦ୍ୟତା )

ନନ୍ଦକା—(ମାନକର) ଅଲଗା କେଉଁ ଗାଡମୁହଁକୁ ଯାଉଛୁ, ପୋଡ଼ାମୁହିଁ ? ପୋଡ଼ାମୁହିଁ ! ତିଳକ ନାଇ, ମାଳ ଝୁଲେଇ ବୈଷ୍ଣବୀ ସାଜିଛି । (ଟାଣିବା)

ବୈଷ୍ଣବୀ—ଓଃ, ହୋଃ—ଘ୍ରାଣ—ଘ୍ରାଣ—ପ୍ରାଣଗଲା—ପ୍ରାଣଗଲା— ।
ନନ୍ଦକା—ଏ ପ୍ରାଣ ଗଲେ, ତୋର ମଙ୍ଗଳ ।
ବୈଷ୍ଣବୀ—ତୁମର ହାତରେ ତ ରହିଛି ।
ନନ୍ଦକା—ହୁଁ—ପୋଡ଼ାମୁହିଁ । ( ଝୁଣ୍ଟାମାର ) ବହୁ, ଏବେ
ଅଭିସାରର କି ଫଳ ?
ବୈଷ୍ଣବୀ—ରାଧାର ଅଭିସାର ହୁଏ ନା ?
ନନ୍ଦକା—ତେବେ କ'ଣ ଦୂତୀ ବାର୍ତ୍ତା ନେଇକି ଯାଇଥିଲୁ ?
ବୈଷ୍ଣବୀ—ଦୂତୀ ବାର୍ତ୍ତା ନେଇ ଅସିଛି ନା ?
ନନ୍ଦକା—ଓହୋ !—ଅଚ୍ଛା, କି ବାର୍ତ୍ତା ଅସିଛି ?
ବୈଷ୍ଣବୀ— —ଗୀତ—

(ରାଧେ) ଶ୍ୟାମ କି ଆଉ ବଞ୍ଚିବ ?
କୁଞ୍ଜଦ୍ୱାରେ ଥାଇ ଅନାଇ ଅନାଇ
ନିଶ୍ଚୟ ସେ'ତ ମରିବ ।
ପବନେ ପତର, ହେଲେ ମର ମର,
ନୂପୁର କ୍ୱଣ କି ଗୁହେଁ ତଉ ତର
ନ ଦେଖି କାହାକୁ, ଡାକିଲେ ବରକୁ
କରୁଛି, "ହାରେ ଦଇବ" ।

ନନ୍ଦକା—ଆଉ ସେତକି,—ସଖି ! ସଖି ! ସତେ କ'ଣ ସେନାଥ
ମୋ'ର ଅଶାରେ ଏତେ ଅନାଶ୍ରା ଭିଅଇଛନ୍ତି ?
ବୈଷ୍ଣବୀ—ଯା କ'ଣ, ତୁଟ ବାକୁ ବାକି ଅଛି ?
ନନ୍ଦକା—ମୁଁ ଯେ ବିଶ୍ୱାସ କରି ପାରୁ ନାହିଁ, ସଖି ।
ବୈଷ୍ଣବୀ—ତୁମେ ବିଶ୍ୱାସ କରିବ କ'ଣ, ମୋତେ ଯେ ସ୍ୱପ୍ନପରି ବୋଧ
ହେଉଛି ! ସତେ, ସଖି ! ତାଙ୍କର ଏପରି କୁଷ୍ଣାର ମୁଁ ଘୁଣାକ୍ଷରେ
ସୁଦ୍ଧା କେବେ ଜାଣିପାରି ନ ଥିଲି—ବର୍ତ୍ତମାନ ଦେଖ ତୁଟି

ପାରୁଛୁ, ଯେ ତାହାଙ୍କ ଘେ ଏଣିକା ଏଣିକି ମୋତେ ଦେଖି-ଲେହିଁ ଚିଡୁଥିଲେ—ଆଜି ସେହି ଜନ, ଅଯାଚିତ ଭାବେ ଏତେ ଅଦର ସ୍ନେହ ଭାବ କରିଥିଲେ । —ହାୟ ! ମୋ'ର ସରଳ ବିଶ୍ୱାସ ଯୋଗୁଁ ସିନା ଆଜ ଏହି ସର୍ବନାଶ ଉପସ୍ଥିତ ।

ନନ୍ଦକା—ପୁଣି ସେହି କଥା ?—ଯାହା ଘଟିବାର ଘଟିଛି, ବର୍ତ୍ତମାନ ସେନାପତିଙ୍କର ଏ' ପାଗଲାମି ଉପରେ ଗ୍ଳାନି, ତାର ବ୍ୟବସ୍ଥା କରିବା ଉଚିତ ।

ବୈଷ୍ଣବୀ—ତା' ତୁମେ ଜାଣ; ମାତ୍ର ମୁଁ ଗୃହେ ବିଶ୍ୱାସଘାତକତାର ପ୍ରତିଶୋଧ—ପାଗଲାମି ରହୁ ବା ଛାଡ଼ୁ—ମୁଁ ଗୃହେ ପ୍ରତିଶୋଧ ଏ' ବିଷୟରେ ତୁମେହିଁ ଏକମାତ୍ର ସହାୟ—ମୋତେ ନିରାଶ କର ନା ସଖୀ—ମୋତେ ସାହାଯ୍ୟ କର ।

ନନ୍ଦକା—ଧୈର୍ଯ୍ୟ ଧର, ସଖୀ ! ମୁଁ ତ ଅନ୍ୟ କିଛୁ କହୁନାହିଁ—ପ୍ରତିଶୋଧ ନେବାକୁହିଁ କହୁଛି ।

ବୈଷ୍ଣବୀ—ମୋତେ ବଦ୍ୟନ୍ତର କୁହ, ସଖୀ !—ବିଶ୍ୱାସଘାତକକୁ ଉପଯୁକ୍ତ ଦଣ୍ଡ ଦେବାକୁ କଦାପି କୁଣ୍ଠିତ ହେବ ନାହିଁ ? କି ଦଣ୍ଡ ଦେବ ? କି ଶାସ୍ତି ତାର ଉପଯୁକ୍ତ ହେବ ?—ଭାବିଛକି ? ଭାବ ନ ଥାଅ ଯେବେ, ଆଜି ଥରେ ଅପରାଧର ଗୁରୁତ୍ୱ ବିବେଚନା କର, ଦଣ୍ଡ ଉଦ୍ଭାବନା କର—ପିଶାଚ ସେ କରିଛି କଣ ? ଗୋଟିଏ ସରଳା ଅବଳାର ଇହକାଳ ପରକାଳ ନଷ୍ଟ କରିଛି—ରାଜକୁମାର ସୁଖ ପଥରେ କଣ୍ଟକନିକ୍ଷେପ କରିଛି—ଭ୍ରାତୃ ଭ୍ରାତୃମଧ୍ୟରେ ବିବାଦ ଜନ୍ମାଇ ଦେଇଛି—ସୁବର୍ଣ୍ଣ ରାଜ୍ୟକୁ ଭସ୍ମାବଶେଷରେ ପରିଣତ କରିବାକୁ ବସିଛି । ତୁମେ ଜାଗ-ରିତ । ଶୟତାନ ଭାବରେ ନିଜକୁ ଅନୁପ୍ରାଣିତ କର—ପୈଶାଚିକ ଦୃଷ୍ଟିରେ ଚତୁର୍ଦିଗ ନିରୀକ୍ଷଣ କର—ଶତ ଶିଖାରେ

ସେଷାଡ଼ି ବିସ୍ତାର କର—ସଗର-ସନ୍ତାନ ତୁଲ୍ୟ ପାପିଷ୍ଠ ଭସ୍ମୀଭୂତ ହେଇଯାଉ—ଗୁରୁ ପାପଙ୍କଠରୁ ଏ' ଧରାଧାମ ମୁକ୍ତ ଲଭ କରୁ—

ନନ୍ଦକା—ତୁ ଏ'ଠର ପାଷାଣୀ କେଉଁଦିନୁ ହେଲୁ, ଶାରଦା ?

ବୈଷ୍ଣବୀ—ଯେଉଁ ଦିନୁ ତାର ପିତା ନିର୍ବାସିତ ହେଲେଣି—ତା'ର ସଂସାର ସୁଖପଥରେ କଣ୍ଟକ ପଡ଼ିଲାଣି—ସୁଖରାଜ୍ୟର ଭବିଷ୍ୟତ ଅମଙ୍ଗଳ ମେଘରେ ଢାକି ଅଣିଲାଣି—

ନନ୍ଦକା—ଅହୋ । ତାଙ୍କଦ୍ୱାରା କ'ଣ ତୋ'ର କିଛିଏ ହେଲେ ମମତା ନାହିଁ ? ତୁ'ତ ଜାଣୁ, ଗୋପନରେ ଅନ୍ତଃପୁର-ପ୍ରବେଶର କି ଦଣ୍ଡ ?

ବୈଷ୍ଣବୀ—ମୃତ୍ୟୁ । ମାତ୍ର ପାପିଷ୍ଠ ପକ୍ଷେ, ଏ'ଯେ ଅତି ଲଘୁଦଣ୍ଡ, ସଖୀ ।

ନନ୍ଦକା—ଏହାଠାରୁ ଗୁରୁତର ଦଣ୍ଡ ଦେବ—ତୋ'ର ସମକ୍ଷରେ ଦେବ—ତୋ'ର ଦ୍ୱାରା ଦିଆଇବ,—ଦେଇ ପାରିବୁ କି ?— ସହି ପାରିବୁ କି ?

ବୈଷ୍ଣବୀ—ରାଜାଦେଶରେ, ପିତୃ ଇଚ୍ଛାରେ ଓ କର୍ତ୍ତବ୍ୟାନୁରୋଧରେ, ନିଶ୍ଚୟ ପାରିବ । ( ସ୍ୱଗତ ) କିନ୍ତୁ—

(ବ୍ୟଥିତ ଭାବାଭିନୟ)

ନନ୍ଦକା—ଲୁହ ଗଡ଼ାଇଲୁ ଯେ ?

ବୈଷ୍ଣବୀ—( ଲୁହ ପୋଛୁ ) କିଛି ନାହିଁ, ସଖୀ—କେବଳ ପ୍ରତିଶୋଧ—ପ୍ରତିଶୋଧ— ( ନେପଥ୍ୟେ "ଜୟ ମହାରାଜ ସୁବର୍ଣ୍ଣ କେଶରୀଙ୍କ ଜୟ" ) ।

ବୈଷ୍ଣବୀ—ଏ' କ'ଣ ? ମହାରାଜ ଦ୍ରୁତପଦରେ ଏଣେ ଧାଇଁଛନ୍ତି କାହିଁକି ? ମୁଁ ଆସୁଛି, ସଖୀ ।

ନନ୍ଦକା—ନା ସହୁ ! ଭୁଲ୍ ଯା ନା—ମୋତେ ଏକୁଟିଆ ଦେଖିଲେ ଯେ ବାବା ବିରକ୍ତ ହେବେ—ପୁଣି ମାଉଜୀ ସଙ୍ଗେ ମୋର ଭାର ଭାବ୍ ବୋଲ୍ ସେତ ଖୁସି ହୁଅନ୍ତି—ନୁହେଁ ? ପୋଡ଼ାମୁହିଁ—ମାଉଜୀ ସାଜନ୍ତି । (ଖୁନ୍ଦାମାରିବା ଓ ନେପଥ୍ୟକୁ ଗୃହିଁ) ଏ'ଙ୍କ'ଣ ? ପିତା ଏ'ପରି ବ୍ୟାକୁଳ ଭାବେ ଧାଇଁଛନ୍ତି କାହିଁକି ?

(ସୁବର୍ଣ୍ଣ ଦେଶସ୍ତଙ୍କ ଦ୍ୱେଗେ ପ୍ରବେଶ)

ସୁବର୍ଣ୍ଣ—ନନ୍ଦକା ! ନନ୍ଦକା !

ନନ୍ଦକା—ବାବା ! ବାବା ! (ଆଲିଙ୍ଗନାବଦ୍ଧ ହୋଇ) ଏ'ପରି କାତର ହେଉଛନ୍ତି କାହିଁକି, ପିତଃ ?

ସୁବର୍ଣ୍ଣ—ସର୍ବନାଶ ଉପସ୍ଥିତ, ମା ! ସର୍ବନାଶ ଉପସ୍ଥିତ ।

ନନ୍ଦକା—କି ସର୍ବନାଶ, ବାବା !

ସୁବର୍ଣ୍ଣ—ଗୈରିଭଙ୍ଗ ଓଡ଼ିଶା ଆକ୍ରମଣ କରିଛି !

ନନ୍ଦକା ଓ ବୈଷ୍ଣବୀ } [ସ୍ୱଗତ] ଆକ୍ରମଣ କରିଛି ! (ପରସ୍ପରକୁ ବିସ୍ମୟ ନେତ୍ରରେ ଗୃହିଁବା)

ନନ୍ଦକା—(ସ୍ୱଗତ) ମନ୍ତ୍ରୀଙ୍କର କୌଶଳ କ'ଣ ବ୍ୟର୍ଥ ହୋଇଛି ?

ସୁବର୍ଣ୍ଣ—କ'ଣ କରିବି, ମା ?

ନନ୍ଦକା—ଏତେ ଅଧୀର କାହିଁକି, ପିତଃ ?

ସୁବର୍ଣ୍ଣ—କେବଳ ତୋ'ରି ସକାଶେ, ନନ୍ଦ !

ନନ୍ଦକା—(ସ୍ୱଗତ) ଆକ୍ରମଣର କାରଣ କଣ, ଅପମାନର ପ୍ରତିଶୋଧ ନେବା—ନା, ମୋତେ ବଳପୂର୍ବକ ହରଣ କରିନେବା ?— ମୋ' ପ୍ରତି ଯେତେବେ ପ୍ରଣୟାସକ୍ତ ଥିଲେ, ମନ୍ତ୍ରୀଙ୍କ ଉପଦେଶାନୁଯାୟୀ କାର୍ଯ୍ୟ ନକଲେ କାହିଁକି ? ଅଥବା ଅମ୍ଭମାନ ତା'ଙ୍କର

ଏତେ ହୃଦ ପ୍ରବଳ, ଯେ ତ୍ରଣସ୍ତୁ ସମ୍ମୁଖରେ ଯୁଦ୍ଧା ସେଥିଙ୍କୁ ଟିକ୍କାଏ ବଳ ଦେଇ ପାରିଲେ ନାହିଁ ?

ସୁବର୍ଣ୍ଣ—ନନ୍ଦ !

ନନ୍ଦକା—(ଭାବ-ସ୍ୱଗତ) ଘୃଢ଼—ଯେଉଁ କାରଣରୁ ସେ ଅନ୍ୟମନ କରନ୍ତୁ, ସେ ବର୍ତ୍ତମାନ ଶତ୍ରୁ—ରାଜ୍ୟର ଶତ୍ରୁ—ପିତାର ଶତ୍ରୁ—ମୋର ମଧ ଶତ୍ରୁ ।

ସୁବର୍ଣ୍ଣ—କ'ଣ ଭାବୁଛୁ, ମା ? ମୋତେ କହ, ମା !

ନନ୍ଦକା—ଏତେବଡ଼ ବୀର ହୋଇ ଏତେ ଦୁର୍ବଳ ବାବା !

ସୁବର୍ଣ୍ଣ—ତୁହି ଯେ ମୋର ସମସ୍ତ ବଳ, ମା !

ନନ୍ଦକା—ମନୋଭାବ ବୁଝି ପାରୁଛୁ ପିତଃ ! କୌଣସି ଚନ୍ତାଃ ନାହିଁ—ଜୀବନ ଥାଉଁ ଥାଉଁ ଏ ମିତୃଶକ୍ତିରେ ଅନ୍ୟ କାହାର ଅଧିକାର ନାହିଁ, ପିତଃ !

ସୁବର୍ଣ୍ଣ—ତେତକ ଆଶ୍ୱାସନା ଦେହେଁ ମା !—ଆ, ମା ! ତୋତେ ଗୋଟିଏ ନିରାପଦ ସ୍ଥାନରେ ରଖିବାର ବନ୍ଦୋବସ୍ତ କରିଦେବ ।

ନନ୍ଦକା—ଏ' କି କଥା, ପିତଃ ! କେଶରୀ କନ୍ୟା ହୋଇ, ଶୃଗାଳ ପରି ଗର୍ତ୍ତରେ ଲୁଚି ରହିବ କିପରି ?

ସୁବର୍ଣ୍ଣ—ତୁ'ତ ଆଉ ଯୁଦ୍ଧ ସ୍ଥଳକୁ ଯିବୁ ନାହିଁ, ମା ?

ନନ୍ଦକା—ଆବଶ୍ୟକ ହେଲେ ଯିବନାହିଁ କାହିଁକି ? ବର୍ତ୍ତମାନ ଆପଣମାନେ ଯୁଦ୍ଧସ୍ଥଳକୁ ଗଲେ, ଦୁର୍ଗରକ୍ଷାଦ ସମ୍ବନ୍ଧେ କାହିଁତ ସାହାଯ୍ୟ କରିପାରିବ ତ ?

ସୁବର୍ଣ୍ଣ—ପାଗଳାମି କର ନା ମା—ତୁ ଏ ସବୁ ବିଷୟରେ କ'ଣ ଜାଣୁ ?

ନନ୍ଦଦା—ନ ଜାଣିଲେ ଖଞ୍ଜ ନେବ—ଲଘୂଖ୍ୱର ଗୋଟିଏ ଜନ୍ତୁ ଦାଅନ୍ତୁ ପିତଃ—ରାଜ୍ୟର ଏ ବିପଦ ବେଳେ ମୁଁ କଦାପି ନିଶ୍ଚିନ୍ତ ହୋଇ ରହି ପାରିବି ନାହିଁ । (ଅର୍ଦ୍ଧସ୍ୱଗତ) ଓଃ, ଶତବୃଶ୍ଚିକ ଦଂଶନରେ ଯେ ହୃଦୟ ମୋର ଜ୍ୱଳି ଉଠୁଛି, ଯେତେବେଳେ ଅନୁଭବ କରୁଛି ମୋ'ର ହେତୁ ଆଜି ରାଜ୍ୟର ଓ ରାଜାର ସର୍ବନାଶ ଉପସ୍ଥିତ !

ସୁବର୍ଣ୍ଣ—ମାତାଜୀ । ଶିଷ୍ୟାକୁ ତୁମର ଠିକଏ ବୁଝାଅ ।

ବୈଷ୍ଣବୀ—ଶିଷ୍ୟାମୋର ଠିକ୍ ବୁଝିଛି, ମହାରାଜ ।—ମୁଁ ଆଉ ଅଧିକ ବୁଝାଇବି କଣ ?

ସୁବର୍ଣ୍ଣ—ତୁମେ ସବୁ ବୈଷ୍ଣବୀ । ଯୁଦ୍ଧ କରିବ ? ଜୀବହିଂସା କରିବ ?

ବୈଷ୍ଣବୀ—ଖୁବ୍ କରିବି, ମହାରାଜ ! ଅବଶ୍ୟକ ହୋଇ ପଡ଼ୁଛି—ବର୍ତ୍ତମାନ ବିନାଦୋଷରେ ରାଜା ଅମ୍ଭମାନଙ୍କର ବିପଦ ଗ୍ରସ୍ତ, ବିନାମେଘରେ ରାଜ୍ୟ ଉପରେ ବଜ୍ର ପତିତ—କିଏ ନିଶ୍ଚିନ୍ତ ହୋଇ ରହି ପାରିବ, ମହାରାଜ ? ଏ ବୈଷ୍ଣବୀ ମଧ୍ୟ ଫୁଲ ମାଳା ପରିବର୍ତ୍ତେ, ତାଲ ତରବାରି ଧରିବାକୁ ଉଦ୍ୟତ— 'ରାଧେକୃଷ୍ଣ' ପରିବର୍ତ୍ତେ, ହାଣ, ମାର, ଧର ଶବ୍ଦରେ ମେଦିନୀ କମ୍ପାଇବାକୁ ପ୍ରସ୍ତୁତ ।

ସୁବର୍ଣ୍ଣ—ଏହି ଜାଗରଣ ଅଜି !

ନନ୍ଦ ଓ ବୈଷ୍ଣବୀ } ଜୟ ମହାରାଜ ସୁବର୍ଣ୍ଣ କେଶରୀଙ୍କର ଜୟ !

ସୁବର୍ଣ୍ଣ—ଅଜି ମୋର ପରାଜୟର ଭୟ ନାହିଁ । ଯେତେବେଳେ ପ୍ରାସାଦରେ ମୋର ଏ'ପରି ଶକ୍ତିର ଜନ୍ମ ହୋଇଛି—ରାଜ୍ୟରେ

ମୋର ଏପରି ପ୍ରଭାବତୀର ଆବିର୍ଭାବ ହୋଇଛି—ତେତେ-ବେଳେ, ଆଉ ଭୟ କଣ?—ଏ ଦୁର୍ବଳ ସନ୍ତାନର ଜୟ ସୁନିଶ୍ଚିତ । ଆସ ମାତୃଗଣ । ତୁମ୍ଭମାନଙ୍କର ସ୍ୱର୍ଗୀୟ ସ୍ପର୍ଶରେ ଏ କ୍ଷୀଣ ଶକ୍ତି ଆଜି ନବତେଜରେ ଉତ୍ତେଜିତ ହୋଇ ଉଠୁ ।

[ ଉଭୟ ପାର୍ଶ୍ୱରେ ଦୁଇ ଜଣଙ୍କୁ ଧରି ଠିଆ ହେବା ]

ନନ୍ଦକାର୍ଡ, ବୈଷ୍ଣବୀ } 'ଜୟ ମହାରାଜ ସୁବର୍ଣ୍ଣ କେଶରୀଙ୍କ ଜୟ' ।

[ ସୁବର୍ଣ୍ଣ ମସ୍ତକ ନତକରିବା ]

---

( ଜପା । )

## ପ୍ରଥମ ଦୃଶ୍ୟ

[ ଯୋଦ୍ଧୃ ବେଶରେ ନନ୍ଦକା ଓ ବୈଷ୍ଣବୀ ଯୁଦ୍ଧ ଦର୍ଶନ କରୁଥିବା ]

ବୈଷ୍ଣବୀ—ସଖି ! ଦେଖ, ଦେଖ, ଯୁଦ୍ଧ ଏ' ଥର କିପରି ଭୀଷଣ ଭାବ ଧାରଣ କଲାଣି ।

ନନ୍ଦକା—ମୃତ୍ୟୁ ଯେପରି କରାଳ ବଦନ ବ୍ୟାଦାନ କରି ଧାଇଁ ଆସିଲାଣି ।

ବୈଷ୍ଣବୀ—ଦେଖ, ଦେଖ—ତାହିଁ ପଦାତିକ ପଦାତିକ ମଧ୍ୟରେ ହସ୍ତା ହସ୍ତି—ତାହିଁ ଅଶ୍ୱାରୋହୀ ଅଶ୍ୱାରୋହୀ ମଧ୍ୟରେ ଧ୍ୱସ୍ତା ଧ୍ୱସ୍ତି—ତାହିଁବା ଅସାମଞ୍ଜସ୍ୟ ଭାବରେ ପରସ୍ପର ମଧ୍ୟରେ ଲୁସ୍ତା ଲୁସ୍ତି ।

ନନ୍ଦକା—ତାହିଁ ଦେଖ ପୁଣି, ଅଶ୍ୱଖୁର ତଳେ ପଦାତିକର ଭୀଷଣ ନିଷ୍ପେଷଣ—ତାହିଁ ଅଶ୍ୱ ଅଶ୍ୱାରୋହୀ ମଧ୍ୟରେ ଭୀଷଣ ଆକର୍ଷଣ ତାହିଁବା ତରବାରି ତରବାରି ମଧ୍ୟରେ ଭୀଷଣ ସଂଘର୍ଷଣ ।

ବୈଷ୍ଣବୀ—ଶୁଣ, ଶୁଣ—ଅସ୍ତ୍ରର ଝଣ ଝଣ ଶବ୍ଦରେ—ଅଶ୍ୱର ହ୍ରେଷା ରବରେ—ହସ୍ତିର ବୃଂହିତରେ, କର୍ଣ୍ଣ କୁହର କିପରି ବିଦୀର୍ଣ୍ଣ ହୋଇ ଯାଉଛି ।

ନନ୍ଦକା—ଅଦ୍ଭୁତ ଶୁଣ, ସ୍ତ୍ରୀତର ଭୟ ବାଦ୍ଧଳ ଶତ୍କାରରେ— ମୁମୂର୍ଷୁର ଆର୍ତ୍ତନାଦରେ, ମର୍ମସ୍ଥଳ କପଟର ବଦୀର୍ଣ୍ଣ ହୋଇ ଯାଉଛି ।

ବୈଷ୍ଣବୀ—ଦେଖ, ଦେଖ, ଗଗନ ମଣ୍ଡଳ କପର ଅସ୍ତ୍ରଶସ୍ତ୍ର ଜାଲରେ ଆଚ୍ଛନ୍ନ ହୋଇ ଯାଉଛି ।

ନନ୍ଦକା—ସଖୀ, ଦେଖ ପୁଣି—ପୃଥିବୀ ପୃଷ୍ଠ କପର ରକ୍ତବନ୍ୟାରେ ପ୍ଲାବିତ ହୋଇ ଯାଉଛି ।

ବୈଷ୍ଣବୀ—ହାୟ, ସୂର୍ଯ୍ୟଦେବ ଭୟରେ ଯେପର ଲୁଚ ଯାଉଛନ୍ତି—

ନନ୍ଦକା—ଲଜ୍ଜାରେ ଯେପର ପାତାଳ ପ୍ରବେଶ କରୁଛନ୍ତି ।

ବୈଷ୍ଣବୀ—ସଖୀ । ଦେଖିଲୁ ଅନାଇ, ଅଶ୍ୱପୃଷ୍ଠେ ବୀର ବାହମେ କିଏ ସେ ଯୁଦ୍ଧ କ୍ଷେତ୍ରରେ ପ୍ରବେଶ କରୁଛନ୍ତି ?

ନନ୍ଦକା—ମହିଷ-ବାହନ ଯମ କି ଆଜ ପିଶାଚ ଭାବେ ଅଗମନ କରୁଛନ୍ତି ?

ବୈଷ୍ଣବୀ—ଏ' ଯେ ତୁମର ସେହି ମନ ଚୋର ।

ନନ୍ଦକା—ହେୟ, ନର-ହନ୍ତା ।

ବୈଷ୍ଣବୀ—ଏ' କି ଭାବ ଆଜ, ସଖୀ ?

ନନ୍ଦକା—ମନୁଷ୍ୟ ପକ୍ଷେ ଯେଉଁ ଭାବ ସ୍ୱାଭାବିକ, ସଖୀ ।

ବୈଷ୍ଣବୀ—ଯୁଦ୍ଧ ଯେ ମନୁଷ୍ୟର ବାହମ,ଦୟା ଓ କୌଶଳର ପରଗୃଯ୍ୟକ ।

ନନ୍ଦକା—ଅତ୍ୟାଗ୍ରର, ଉତ୍ପୀଡ଼ନ ଓ ହତ୍ୟାର ଏହା ପ୍ରଧାନ ପ୍ରତପୋଷକ ।

ବୈଷ୍ଣବୀ—ଏ' ଗୁଡ଼ାକ ଅନୁସଙ୍ଗିକ ।

ନନ୍ଦକା—ତେବେ ପ୍ରଶଂସନୀୟ କପର ?

ବୈଷ୍ଣବୀ—ଦୋଷ ଅପେକ୍ଷା ଗୁଣର ମାତ୍ରା ଅଧିକ ବୋଲି ।

ନନ୍ଦକା—ବିଷକଣିକା ମିଶ୍ରିତ ଅମୃତ ଖଣ୍ଡ ତେବେ କାଦମ୍ବାଙ୍କୁ ଛାଡ଼ିବି କି ?

ବୈଷ୍ଣବୀ—ହଠାତ୍ ତୁମର ଏ'କି ପରିବର୍ତ୍ତନ, ସଖୀ ?—ଯୁଦ୍ଧକରିବି ବୋଲି ଯୁଦ୍ଧ ପୋଷାକ ପିନ୍ଧିଛ—ହସ୍ତରେ ଅସ୍ତ୍ରଧାରଣ କରିଛ—ସହସା ଏ'କି ପରିବର୍ତ୍ତନ ତୁମର ?

ନନ୍ଦକା—ଏହି ମୁହୂର୍ତ୍ତେ ମୁଁ ସବୁ ତ୍ୟାଗକଲି,ସଖୀ । (ଅସ୍ତ୍ର ନିକ୍ଷେପ) ଏହି କି ସେ' ଯୁଦ୍ଧ ? ଲୋକଙ୍କର ଯା'ର ଏତେ ପ୍ରଶଂସା ? ହତ୍ୟାବ୍ୟାପାର ଛଡ଼ା ଏହା ଅଧିକ କେଉଁ ବିଷୟରେ ? ହିଂସ୍ର ଠାରୁ ମନୁଷ୍ୟ ଶ୍ରେଷ୍ଠ କେଉଁ ଗୁଣରେ ?

ବୈଷ୍ଣବୀ—( ସସ୍ମିତେ ) ବେଶ, ମୋର ଭେକ ତା' ହେଲେ ଧାରଣକର ।

ନନ୍ଦକା—ସଖୀ । ସଖୀ ? ତୋ'ର କ'ଣ ଆଖି ଖୋଲୁ ନାହିଁ ?—ନାରୀ-ହୃଦୟରେ କଣ ବ୍ୟଥା ଲାଗୁନାହିଁ ? ଜଣେ ଉନ୍ମତ୍ତ ହୋଇ ତୀକ୍ଷ୍ଣାସ୍ତ୍ର ପ୍ରହାର କରୁଛି—ଅନ୍ୟଜଣେ ଭୀଷଣ ଚିତ୍କାର କରି ଭୂପତିତ ହେଉଛି; ଜଣେ ଜୟୋଲ୍ଲାସରେ ନୃତ୍ୟ କରି ବୁଲୁଛି—ଅନ୍ୟଜଣେ ମୃତ୍ୟୁ ଯନ୍ତଣାରେ ଆର୍ତ୍ତନାଦ କରି ଲୋଟୁଛି; ଜଣେ ବୀରଗର୍ବେ ଅଶ୍ବ ଦୌଡ଼ାଇ ଦେଉଛି—ଅନ୍ୟଜଣେ ଦଳିତ ବିଦଳିତ ହୋଇ ପ୍ରାଣ ବିସର୍ଜନ କରୁଛି; କି ବିଭତ୍ସତା ! ସଖି, ସଖି । ଏ ଜଘନ୍ୟ ଦୃଶ୍ୟ ଦର୍ଶନରେ କି ତୋର ମନ ବିଗଳିତ ହେଉନାହିଁ ? ଶତ୍ରୁ ହେଉ, ମିତ୍ର ହେଉ, ସମସ୍ତେ କ'ଣ ମନୁଷ୍ୟ ନୁହନ୍ତି ? ସମସ୍ତେ କ'ଣ ଭାଇ ବନ୍ଧୁ ନୁହନ୍ତି ? ସମସ୍ତେ କ'ଣ ଏକ ପରମାତ୍ମାର ଅଂଶ ନୁହନ୍ତି ? ବିବାଦ, ମନୋମାଳିନ୍ୟ ଘଟିଲା—ଅନ୍ୟ ଉପାୟରେ କ'ଣ ମିମାଂସା କରିବାର ଉପାୟ ନାହିଁ ?—ଏହି ରାକ୍ଷସୀ ଯୁଦ୍ଧ କି

ଏକମାତ୍ର ଉପାୟ ?—ନନ୍ଦ ! ଯୁଦ୍ଧବିଷୟରେ ମୋର ଯେଉଁ ମହତ୍, ଧାରଣା ଥିଲା, ତାହା ଆଜ ଯୁଦ୍ଧର ଏ' ବୀଭତ୍ସ ଦୃଶ୍ୟ ଦର୍ଶନରେ ପରିବର୍ତ୍ତିତ ହୋଇଛି । ଏ ଯୁଦ୍ଧ, ଯୁଦ୍ଧ ନୁହେଁ— ଗୋଟିଏ ହତ୍ୟାକାଣ୍ଡ—ମନୁଷ୍ୟର ପଶୁତ୍ୱର ନିଦର୍ଶନ ।

ବୈଷ୍ଣବୀ—ପ୍ରକୃତ କହୁଛ, ସଖି ! ତୁମ କଥାରେ ସତେ ଅଜ କାହିଁର ଗୋଟିଏ ନୂତନ ଭାବ ଜାଗି ଉଠୁଛି—ମୁଁ ମଧ୍ୟ ଏ' ପୋଷାକ, ଏ'ଅସ୍ତ୍ର ଜନ୍ମପାଇଁ ପରିତ୍ୟାଗ କଲି—ଯେଉଁ ଛଦ୍ମବେଶ ମୁଁ ଧାରଣ କରିଥିଲି, ତାହାହିଁ ଏମନ୍ତ ମୃତ୍ୟୁ ପର୍ଯ୍ୟନ୍ତ ମୋର ପ୍ରକୃତ ଭୂଷଣ ହେଉ !

ନନ୍ଦକା—ଚାଲ, ସଖି । ଫେରିଯିବା ଚାଲ—ଏ' ଦୃଶ୍ୟ ଆଉ ସହ୍ୟ ହେଉ ନାହିଁ ।

ବୈଷ୍ଣବୀ—ସନ୍ଧ୍ୟା ମଧ୍ୟ ହୋଇ ଆସିଲାଣି ।

[ ନେପଥ୍ୟେ "ଜୟ ମହାରାଜ ସୁବର୍ଣ୍ଣକେଶରୀଙ୍କର ଜୟ ।" ]

ବୈଷ୍ଣବୀ—ଅମ୍ଭମାନଙ୍କର ଜୟ ହୋଇଛି—ଏହି ଯେ ପିତା ଆସୁଛନ୍ତି ।

( ସୁବର୍ଣ୍ଣ କେଶରୀଙ୍କ ପ୍ରବେଶ )

ସୁବର୍ଣ୍ଣ—ନନ୍ଦ ! ଅମ୍ଭମାନଙ୍କର ଜୟ ହୋଇଛି ।

ବୈଷ୍ଣବୀ—"ଜୟ ମହାରାଜ—

ନନ୍ଦକା—ଚୁପ୍ !

ସୁବର୍ଣ୍ଣ—ଏ' କଣ ନନ୍ଦ !—ଜୟରେ ଆନନ୍ଦ ପ୍ରକାଶ କରିବାକୁ ବାଧା ଦେଉଛୁ କାହିଁକି ?—ଏହା କଣ ଉଚିତ ନୁହେଁ ?

ନନ୍ଦକା—ଯେଉଁମାନଙ୍କର ପ୍ରାଣମୂଲ୍ୟରେ ଏହି ଜୟ ଆଜ କ୍ରୀତ ହୋଇଛି ସେମାନଙ୍କ ପାଇଁ କାନ୍ଦିବା କ'ଣ ଉଚିତ ନୁହେଁ, ପିତଃ ?

ସୁବର୍ଣ୍ଣ—ନନ୍ଦ ! ତୁ ଭାରି କୋମଳ-ହୃଦୟା ।

ନନ୍ଦିକା—ହୃଦୟତ ସ୍ୱଭାବତଃ କୋମଳ, ପିତଃ ?
ସୁବର୍ଣ୍ଣ—ବୀର କିନ୍ତୁ ପାଷାଣ-ହୃଦୟ ହୁଏ ।
ନନ୍ଦିକା—ଏ ଅସ୍ୱାଭାବିକ ଭାବ ଧାରଣ କି ଜଚିତ, ପିତଃ ?
ସୁବର୍ଣ୍ଣ—ଜଚିତ ଅନୁଚିତ,ତୁ ପୁରୁଷ ହୋଇଥିଲେ ବୁଝିଥାନ୍ତୁ--ପ୍ରକୃତ ବୀର ଯେ, ସେ ଯେତେବେଳେ ଯୁଦ୍ଧୋନ୍ମତ୍ତ ହୋଇ ଉଠେ, ସେତେବେଳେ ହୃଦୟ ତାର ସ୍ୱଭାବତଃ ପାଷାଣଠାରୁ କଠିଣତର ହୁଏ—ବାହୁ ଦ୍ୱୟ ବଜ୍ରଠାରୁ ଦୃଢ଼ତର ହୁଏ—ଚକ୍ଷୁ ଅଗ୍ନି ସ୍ଫୁଲିଙ୍ଗ ଉଦ୍‌ଗୀରଣ କରେ—କବନ୍ଧ ଦୃଷ୍ଟି ତାର ଆନନ୍ଦ ଉତ୍ପାଦନ କରେ—ଆର୍ତ୍ତନାଦ ତା'କୁ କର୍ଣ୍ଣାମୃତ ଦାନ କରେ—ମୃତ୍ୟୁ ଯନ୍ତ୍ରଣା ପ୍ରାଣକୁ ତା'ର ଅଶ୍ୱାସନା ଦିଏ; ସେ ଏକ ଅପୂର୍ବ ଭାବ—ସେ ଭାବ ବାକ୍ୟରେ ଅପ୍ରକାଶ୍ୟ—ବିଶେଷତଃ କୋମଳାଙ୍ଗୀ ନାରୀଙ୍କୁ ବୁଝାଇବା ଅସମ୍ଭବ ।
ନନ୍ଦିକା—ଶୁଣିବାକୁ ମଧ୍ୟ, ନାରୀ ହେୟଜ୍ଞାନ କରେ ।
ସୁବର୍ଣ୍ଣ—ମୁଁ ତ ସେଥିଯୋଗୁଁ ଅଗହୁଁ କହୁଥିଲି—ତୁ ଏ'ସବୁ ସହି ପାରିବୁ ନାହିଁ ।
ନନ୍ଦିକା—ନରର ପଶୁତ୍ୱ ନର କେବେ ସହ୍ୟ କରିପାରେ ନାହିଁ, ପିତଃ ।
ସୁବର୍ଣ୍ଣ—ପଶୁତ୍ୱ ନୁହେଁ, ମା । ଏହାହିଁ ବୀରତ୍ୱ ।
ନନ୍ଦିକା—ଯେବେ ନରର ଏହାହିଁ ବୀରତ୍ୱ ହୁଏ, ତେବେ ଈଶ୍ୱରଙ୍କୁ ଧନ୍ୟବାଦ, ଯେ ନାରୀଙ୍କୁ ଭୀରୁତା ଦେଇଛନ୍ତି ।
ସୁବର୍ଣ୍ଣ—(ସ୍ୱଗତ) ଅହା ! ମା ମୋର କୋମଳ ପ୍ରାଣରେ ବଡ଼ ଆଘାତ ପାଇଛି । ( ପ୍ରକାଶ୍ୟେ ) ଆ, ମା । ଏଥର ଆଉ ତୁ ଯୁଦ୍ଧ ବେଳେ କେବେ ଉପରକୁ ଆସିବୁ ନାହିଁ—ତୋତେ ଏ'ସବୁ

ଗୋଟିଏ ସ୍ଥାନକୁ ପଠାଇ ଦେବ, ଯେଉଁଠାରେ କି ଯୁଦ୍ଧର କୋଳାହଳ ପର୍ଯ୍ୟନ୍ତ ଶ୍ରୁତିଗୋଚର ହେବନାହିଁ ।

ନନ୍ଦକା—ବାବା ! ଭେଣସ୍ତି-କନ୍ୟା ମୁଁ—ଶୃଗାଳଦେରି କି ଲୁଚି ରହି ପାରେଁ ?

ସୁବର୍ଣ୍ଣ—ଏହି ଯୁଦ୍ଧ ଦେଖିକି ଏ'ପରି ବ୍ୟାକୁଳା ହେଉଛୁ—

ନନ୍ଦକା—ଆଶୀର୍ବାଦ କର, ବାବା ! ମୁଁ ଏହିପରି ବ୍ୟାକୁଳା ହୁଏଁ ।

ସୁବର୍ଣ୍ଣ—ବ୍ୟାକୁଳା ହେଲେ ତୁ ଅଗେ ଦେଖି ପାରୁବୁ କପରି—ଯୁଦ୍ଧ ସ୍ଥଳକୁ ଯିବାର ହୁଦ୍‌ର କଥା ?

ନନ୍ଦକା—ବାବା ! ମୁଁ ଯେତେ ବ୍ୟାକୁଳା ହେବ, ସେତେ ବୀର ବିକ୍ରମରେ ଯୁଦ୍ଧ କରିପାରିବ ।

ସୁବର୍ଣ୍ଣ—( ସହାସ୍ୟେ ) ଯୁଦ୍ଧ କରି ପାରିବୁ ? ପାଗଳୀ ! ଏହିକ୍ଷଣି ପରି କହୁଥିଲୁ ଯୁଦ୍ଧ କରିବା ପଶୁତ୍ୱ ?

ନନ୍ଦକା—ମୁଁ ସେହି ପଶୁତ୍ୱ ସଙ୍ଗେ ଯୁଦ୍ଧ କରିବ, ବାବା !

ସୁବର୍ଣ୍ଣ—( ସସ୍ନେହେ ) ସେ କପରି, ପାଗଳି ?

ନନ୍ଦକା—କାହିଁକି, ବାବା ? ନର ଯେତେବେଳେ ନରକୁ ହତ୍ୟା କରିବାକୁ ଉଦ୍ୟତ ହେବ, ନାରୀ ଯାଇ ମଝିସ୍ଥଳରେ ଠିଆ ହେବ,—ନର ଯେତେବେଳେ ମୁମୂର୍ଷୁର ଆର୍ତ୍ତନାଦରେ ଉଲ୍ଲାସ ପ୍ରକାଶ କରିବ, ନାରୀ ଅଶ୍ରୁବିସର୍ଜନ କରି ମୁମୂର୍ଷୁଙ୍କୁ ନିଜ କୋଳରେ ସ୍ଥାନ ଦେବ,—ନର ଯେତେବେଳେ ନରହତ୍ୟା କରି ବୀରତ୍ୱ ଦେଖାଇବ, ନାରୀ ନିଜର ବକ୍ଷସ୍ଥଳ ଦାନ କରି ବୀରତ୍ୱ ଦେଖାଇବ ! ପିତା, ପିତା ! ଅଜଠୁଁ ଏହିପରି ଯୁଦ୍ଧ କରିବ ।

ସୁବର୍ଣ୍ଣ—ପାଗଳୀ ! ତୋତେ ଆଉ ପାରିଲି ନାହିଁ—ଅ, ଟିକିଏ ବିଶ୍ରାମ କରିବ ! ନନ୍ଦ ! ଶୁଣିଛୁ ନା, ସେନାପତି ବଡ଼ ଗୁରୁତର ଭାବେ ଆହତ ହୋଇଛନ୍ତି ?

ବୈଷ୍ଣବୀ—ଗୁରୁଙ୍କର ଭାବେ ?

ସୁବର୍ଣ୍ଣ—ଭୟ ନାହିଁ ।

ନନ୍ଦକା—ଯାଅ ବୈଷ୍ଣବୀ । ଥରେ ଦେଖିଆସ—ସେ ବୈଷ୍ଣବୀକୁ ଭାବି ଭଲ ପାଆନ୍ତି, ପିତା ।

ସୁବର୍ଣ୍ଣ—ବର୍ତ୍ତମାନ ଦୁର୍ଗ ବାହାରକୁ ଯିବା ଉଚିତ ନୁହେଁ—ଆସ, ବୈଷ୍ଣବୀ ।

ବୈଷ୍ଣବୀ—ଗୁଲନ୍ଦୁ ମହାରାଜ । ( ନନ୍ଦକା ଓ ସୁବର୍ଣ୍ଣର ପ୍ରସ୍ଥାନ ) ଗୁରୁଙ୍କର ଭାବିବ ଅନ୍ତ ହୋଇଛନ୍ତି ? ହୃଦୟ । ଏ'ପର କୋମଳ ହେଉଛୁ କାହିଁକି ? ପ୍ରତିହିଂସା—ପ୍ରତିହିଂସା । ନା, ନା— ( ଭାବି ) ସମ୍ରା ଯେ ନୂତନ ପ୍ରକାର ଯୁଦ୍ଧ କରିବାକୁ ଯାଉଛୁ—ମୁଁ କ'ଣ ନୂତନ ପ୍ରକାର ପ୍ରତିହିଂସା ସାଧନ କରି ପାରିବି ନାହିଁ ? ସହ । ସହ । ଆଜି କି ନୂତନ ଭାବ ଜାଗରିତ କରି ଦେଉଛୁ ?                    ( ପ୍ରସ୍ଥାନ )

---

# ଦ୍ୱିତୀୟ ଦୃଶ୍ୟ

[ ଶିବିର—ଭୈରବଚନ୍ଦ୍ର ଅସ୍ଥିରଭାବେ ପଦଚାରଣା କରୁଥିଲେ ]

ଭୈରବଚନ୍ଦ୍ର—ପରାଜୟ ! ପରାଜୟ ! କି ଲଜ୍ଜା—କ୍ଷତ୍ରିୟ ପକ୍ଷେ କି ଘୃଣାର ବିଷୟ ! ମୃତ୍ୟୁ ବରଂ—ପରାଜୟ ପଦୋଚାରଣ କ୍ଷତ୍ରିୟ ପକ୍ଷେ ଏକାନ୍ତ ଅସହ୍ୟ ! ( ମନ୍ତ୍ରୀଙ୍କର ପ୍ରବେଶ )

ମନ୍ତ୍ରୀ—ମହାରାଜ କି ଏ'ପର୍ଯ୍ୟନ୍ତ ଜାଗ୍ରତ ?

ଭୈରବ—କି ଶାନ୍ତିରେ ଶୋଇବି, ମନ୍ତ୍ରି ?

ମନ୍ତ୍ରି—'ଜୟ ପରାଜୟ' ଉଭୟ ସମାନ, ମହାରାଜ !

ଭୈରବ—ଉଭୟ ସମାନ—ହାଃ, ହାଃ, ହାଃ, । ତେବେ କେଉଁ ଆଶାରେ ଯୋଦ୍ଧା ଯୁଦ୍ଧ କରେ, ମନ୍ତ୍ରି ?

ମନ୍ତ୍ରୀ—ଯେଉଁ ଆଶାରେ ଯୁଦ୍ଧକରୁ ମହାରାଜ ! ଏ' ଯୁଦ୍ଧ କେବଳ ନରହତ୍ୟା ଛଡ଼ା ଅନ୍ୟ କିଛି ନୁହେଁ—କାରଣ, ଯେଉଁ ଯୋଦ୍ଧା ଯେତେ ନରହତ୍ୟା କରିପାରେ, ସେ ସେତିକି ବୀରବୋଲି ଖ୍ୟାତି ଲାଭ କରେ ।

ଭୈରବ—ମନ୍ତ୍ରି ! ତୁମ୍ଭର ଏ'ସ୍ଥାନରେ ମନ୍ତ୍ରଣା ଦେବା କାର୍ଯ୍ୟ ନୁହେଁ—ଏ'କେବଳ ଅନଧିକାର ଚର୍ଚ୍ଚା—ଯାଅ, ସେନାପତିଙ୍କୁ ଡାକିଦିଅ ।

ମନ୍ତ୍ରୀ—ବର୍ତ୍ତମାନ ?

ଭୈରବ—ହଁ ବର୍ତ୍ତମାନ, ଏହି ରାତ୍ରରେ ।

ମନ୍ତ୍ରୀ—ଈଶ୍ୱର ! କେବେ ଏହି ପଶୁବୃତ୍ତିକି ମନୁଷ୍ୟ ହୃଦୟରୁ ଅପସାରିତ କରିଦେବେ ? ( ପ୍ରସ୍ଥାନୋଦ୍ୟୋତ )

ଶ୍ରେର—ହଁ ଭଲକଥା, ତୁମେ ଏହିକ୍ଷଣି—ଅଚ୍ଛା, ଅତ ପ୍ରତ୍ୟୁଷରୁ କର୍ଣ୍ଣାଟକୁ ଫେର ଯାଇ ବାସୁଦେବ ମନ୍ତ୍ରୀଙ୍କ ଶୀଘ୍ର ଏଠାକୁ ପ୍ରେରଣ କର ।

ମନ୍ତ୍ରୀ—ଯେ ଆଜ୍ଞା । ( ସ୍ୱଗତ ) ଧନ୍ୟ ଈଶ୍ୱର—ମୋତେ ଏହି ପାପଦର୍ଶନରୁ ରକ୍ଷା କରିଛନ୍ତି ।                                ( ପ୍ରସ୍ଥାନ )

ଶ୍ରେର—ବାସୁଦେବ ଦ୍ୱାରା ଅନେକ ସନ୍ଧାନ ମିଳପାରେ; ମାତ୍ର ସେ ଯେବେ ବିଶ୍ୱାସଘାତକତା କରେ—ଅସମ୍ଭବ, ଦୁଇ କୁଳରୁ ତାହା ହେଲେ ଯେ ବଞ୍ଚିତ ହେବ । ବର୍ତ୍ତମାନ କିପରି ଭାବେ ଆକ୍ରମଣ କରୁଛି ?—କେଉଁ ଦିଗରୁ କଲେ ସୁବିଧା ହେବ ? (ଭାବି) ଏହି କାଠଯୋଡ଼ି ନଦୀ କୌଣସି ମତେ ଲଙ୍ଘନ ନକଲେ ଆଉ ଉପାୟ ନାହିଁ; କିନ୍ତୁ କିପରି କରିବି ?—ଏହା ଯେ ସୁଦୃଢ଼ ଦୁର୍ଗପ୍ରାଚୀର ପରି ସମସ୍ତ ସହରକୁ ବେଷ୍ଟନ କରିରହିଛି—ପୁଣି ସଶସ୍ତ୍ର ଶତ୍ରୁ ସୈନ୍ୟ ତଦା ଗିର ତଟୁପରି ପାଦଚାରଣା କରୁଛନ୍ତି—ଉପାୟ କଣ ? ( ଭାବନା )

( ସେନାପତିର ପ୍ରବେଶ )

ସେନାପତି—ଅଭିବାଦନ, ମହାରାଜ !

ଶ୍ରେର—ତୁମ୍ଭେ କ'ଣ ଶୋଇ ଥିଲ, ସେନାପତି ?

ସେନାପତି—ଏ'କି ଶୋଇବା ବେଳ, ମହାରାଜ । ମୁଁ ଗୁପ୍ତବେଶରେ ଶତ୍ରୁର କ୍ରିୟାକଳାପ ନିରୀକ୍ଷଣ କରିବାକୁ ଯାଇଥିଲି ।

ଶ୍ରେର—କ'ଣ ଦେଖିଲ ?

ସେନା—ଏହି ସୁଯୋଗ ।

ଶ୍ରେର—ସମସ୍ତେ କ'ଣ ନିଦ୍ରିତ ?

ସେନାପତି—ଜୟୋଲ୍ଲାସରେ ଉନ୍ମତ୍ତ ସେମାନଙ୍କର ବିଶ୍ୱାସ, ଶତ୍ରୁ ରାତ୍ରରେ କଦାପି ଆକ୍ରମଣ କରିବ ନାହିଁ ।

ଗୈରୁ—ତେବେ ଏହୁ ସୁଯୋଗ, ସେନାପତେ, ଏହୁ ସୁଯୋଗ ।
ସେନା—ଆପଣ ଅଧୀର ହେଉନ୍ତୁନାହିଁ—ଆଜ ଗୋଟିଏ ଶୁଭ ସଂବାଦ—ସେମାନଙ୍କର ସେନାପତି ଗୁରୁତର ଭାବେ ଆହତ ହୋଇଅଛନ୍ତି ।
ଗୈରୁ—( ସାନନ୍ଦେ) ଆହତ ? ହାଃହାଃହାଃ—ଆଉ ବିଳମ୍ବ କର ନାହିଁ, ସେନାପତେ । ତାଙ୍କ ସୈନ୍ୟଗଣଙ୍କୁ—ବଜାଅ ଦୁନ୍ଦୁଭି—ଗାଅ ଉଚ୍ଚ କଣ୍ଠେ, 'ଜୟ କର୍ଣ୍ଣାଟପତିଙ୍କ ଜୟ' ।
ସେନା—ମହାରାଜ ! ଧୀର ସ୍ଥିର ହୋଇ କାର୍ଯ୍ୟ କରିବାକୁ ହେବ । ଆମ୍ଭମାନଙ୍କୁ ଅତି ଗୋପନରେ କାର୍ଯ୍ୟ କରିବାକୁ ହେବ—ଆପଣ ଶୀଘ୍ର ପ୍ରସ୍ତୁତ ହେଉନ୍ତୁ, ମୁଁ ଏତଣେ ବନ୍ଦୋବସ୍ତ କରୁଛି ।
ଗୈରୁ—ମୁଁ ସର୍ବଦା ପ୍ରସ୍ତୁତ, ସେନାପତେ । ଯୁଦ୍ଧ—ଯୁଦ୍ଧ—ମୋର ଜାଗରଣରେ ଏକମାତ୍ର ଚିନ୍ତା, ନିଦ୍ରାରେ ଏକମାତ୍ର ସ୍ୱପ୍ନ
( ପ୍ରସ୍ଥାନ )
ସେନା—ଧନ୍ୟ ବୀର !

( ପ୍ରସ୍ଥାନ ଓ କେତେକ ଜଣ ସୈନ୍ୟଙ୍କର ପ୍ରବେଶ )

୧ମ ସୈନିକ—ଭାଇ । ବସେଇ ଉଠେଇ ଦେଲେ ନାହିଁ, ପୁଣି ଡାକରା ପଡ଼ିଲାଣି ।
୨ୟ—କହନା ଭାଇ । ମୋର ଗୋଡ଼ ହାତ ତ ଆଉ ଚଳୁନାହିଁ ।
୩ୟ—ଦିନଯାକ ଯୁଦ୍ଧ କରି କରି ମଣିଷ କ'ଣ କ୍ଲାନ୍ତ ହୋଇ ପଡ଼ିବ ନାହିଁ ?
୧ମ—ଅଚ୍ଛା, ମହାରାଜାଙ୍କର କଣ ଟିକିଏ ବିଶ୍ରାମ କରିବାକୁ ମନ ବଳୁନାହିଁ ?
୨ୟ—ଚାଲ ହେ, ଏଠି ଟିକିଏ ଶୋଇ ପଡ଼ିବା—ସମସ୍ତେ ଉଠନ୍ତୁ, ଯିବା ।

( ଗୌରବଗଙ୍ଗଙ୍କ ବେଗରେ ପୁନଃ ପ୍ରବେଶ )

ଗୌରବ—ଭ୍ରାତୃଗଣ ! ଆଜ ଏ'କି ଲକ୍ଷଣ ଭାବ ତୁମ୍ଭମାନଙ୍କର ?— ଆଳସ୍ୟ, ନିଦ୍ରା—ଏହା କି ତୁମ୍ଭମାନଙ୍କର ଭୂଷଣ ?— ବୀରଠାଟେ ରାଜା କେବେ ଶୋଭା ପାଏ ? ଏ' ଭାବ କଠିନ ପ୍ରାଣ, ସୈନ୍ୟଗଣ । ଏଥିରେ ସୁପ୍ତି ନାହିଁ—ଏଥିରେ ଶାନ୍ତି ନାହିଁ—ଏଥିରେ ବିଶ୍ରାମିତା ନାହିଁ ! ଏ' ଏକ ଅପୂର୍ବ ପ୍ରାଣ— ଆନନ୍ଦ ପାଏ, ଚିର ଜାଗରଣରେ—ଶାନ୍ତି ପାଏ, ଅହୋରାତ୍ର ପରିଶ୍ରମରେ—ମୁକ୍ତିଲାଭ କରେ, ନିଜର ଉଦ୍ଦେଶ୍ୟ ସାଧନରେ ।

୧ମ ସୈନ୍ୟ—ମହାରାଜ !

ଗୌରବ—ଯେବେ ତୁମ୍ଭେମାନେ ନିତାନ୍ତ କ୍ଳାନ୍ତ—କିଛି ଚିନ୍ତାନାହିଁ, ମୁଁ ନିଜେ ଗାତ୍ର ମର୍ଦ୍ଦନ ଦ୍ୱାରା ସେ କ୍ଳାନ୍ତି ଅପନୋଦନ କରିବାକୁ ପ୍ରସ୍ତୁତ । ସଙ୍କୋଚର କୌଣସି କାରଣ ନାହିଁ, ସୈନ୍ୟଗଣ !—ଏ ସଂଗ୍ରାମ ସ୍ଥଳ, ସମସ୍ତେ ବର୍ତ୍ତମାନ ସମାନ । ଉଚ୍ଚ, ନୀଚ ଜ୍ଞାନ ଏ' କ୍ଷେତ୍ରରେ ଅକର୍ତ୍ତବ୍ୟ—ମହତ୍ ଉଦ୍ଦେଶ୍ୟ କେବଳ ଏଥିରେ ସଫଳ ହେବାର ସମ୍ଭାବନା ।

ସୈନ୍ୟଗଣ—ଅଉ କ୍ଳାନ୍ତି ନାହିଁ ମହାରାଜ ! ଅମ୍ଭେମାନେ ନବଶକ୍ତି ଲାଭ କରିଛୁଁ । ଜୟ ମହାରାଜ—

ଗୌରବ—ଚୂପ୍ ଚୂପ୍, ଧୀରେ ଧୀରେ ମୋତେ ଅନୁସରଣ କର, ସୈନ୍ୟଗଣ !

[ ଗୌରବଗଙ୍ଗଙ୍କ ପଛେ ସମସ୍ତଙ୍କର ଧୀରେ ଧୀରେ ପ୍ରସ୍ଥାନ ]

---

## ତୃତୀୟ ଦୃଶ୍ୟ ।

( କକ୍ଷ )

[ ନନ୍ଦବାର ଗଡ଼ ଦାଣ୍ଡରେ ଝୁଲୁଥିବା ଓ ସେନାପତି ଶଯ୍ୟାରେ ଅର୍ଦ୍ଧଶାୟିତ ଭାବେ ଉପବେଶନ କରିଥିବା ]

ସେନାପତି—କିଏ ସେ ବୈଷ୍ଣବୀ ? ମୋପ୍ରତି ତାର ଏତେ ଅନୁଗ୍ରହ କାହିଁକି ? ସେକି ଦେବପ୍ରେରିତା ?—ସେ' ନ ଥିଲେ ମୋର ପ୍ରାଣ ପାଇବା ଯେ ଦୁଷ୍କର ହୋଇଥାନ୍ତା—ଦିନରାତି ପାଖେ ପାଖେ ରହି, ମୋର ଯେପରି ସେବା ଶୁଶ୍ରୂଷା କରୁଛି, ସ୍ତ୍ରୀ ବୋଧହୁଏ ସ୍ୱାମୀର ସେପରି ସେବା କରେ ନାହିଁ—ମା ବୋଧହୁଏ ରୁଗ୍ଣ ସନ୍ତାନର ସେପରି ଶୁଶ୍ରୂଷା କରେ ନାହିଁ । ବୈଷ୍ଣବୀକୁ କି ପୁରସ୍କାର ଦେବି ? କି ପୁରସ୍କାର ଦେଲେ ପ୍ରାଣଦାନର ଉପଯୁକ୍ତ ବିନିମୟ ହେବ ?—ଏହି ଯେ ମୋର ପ୍ରାଣଦାତ୍ରୀ । ଆସ, ଆସ ବୈଷ୍ଣବୀ !

( ବୈଷ୍ଣବୀର ଗାଇ ଗାଇ ପ୍ରବେଶ—ସେନାପତି ସାଶ୍ଚର୍ଯ୍ୟେ ଚାହିଁ ରହିଥିବା )

ବୈଷ୍ଣବୀ— ( ଗୀତ )

ସେ ଯେ କୁଞ୍ଜକାନନେ ମୋତେ କରୁଛି ମନା ।
କେମନ୍ତେ ରହିବି, ସ୍ୱାହିଁ କେମନ୍ତେ କହନା ?
ଯେ ତାନେ, ଯେ ବୋଲେ, ବଂଶୀ ବାଜୁ ଗୋ କାନନେ;
'ରାଧା, ରାଧା' ବୋଲି ପଶେ ମୋ ଶ୍ରବଣେ,
ଆକୁଳ କରେ ଗୋ ପ୍ରାଣ ଦିଏ ବେଦନା ॥

ସେନା—ଏତେ ଅନୁରାଗ—ଏତେ ଅନୁଗ୍ରହ ତୁମ୍ଭର ବୈଷ୍ଣବୀ ?—ବୈଷ୍ଣବୀ, ବୈଷ୍ଣବୀ !—

( ଉଠିବାକୁ ଚେଷ୍ଟା କରିବା )

ବୈଷ୍ଣବୀ—ବସ, ବସ--ତୁମେ ଯେ ବର୍ତ୍ତମାନ ସୁଦ୍ଧା ଭାରି ଦୁର୍ବଳ ।
ଏହି ମୁଁ ବସୁଛି । (ଶଯ୍ୟାର ଏକପ୍ରାନ୍ତେ ଉପବେଶନ କରିବା)

ସେନା—ବୈଷ୍ଣବ ! ବୈଷ୍ଣବ ! କୁହ, ତୁମେ କିଏ ?

ବୈଷ୍ଣବୀ—କହୁଛିତ, ମୁ ଜଣେ କୃଷ୍ଣପ୍ରେମୋନ୍ମାଦନୀ ଭିଖାରୁଣୀ ।

( ଗୀତ )

କୃଷ୍ଣ ମୋର ପ୍ରାଣ, କୃଷ୍ଣ ମୋର ଧ୍ୟାନ,
କୃଷ୍ଣ କୃଷ୍ଣ ବୋଲି ସଦା ଉଚ୍ଚାରନ,

ସେନାପତି—ଏ'ଦୀନ ପାପୀ ପ୍ରତି ଏତେ କୃପା ହେଲା କିପରି ?

ବୈଷ୍ଣବୀ—କୃପା !—

( ଗୀତ )

କୃପା ଯେ ମାଗଇ, ତାହୁଁ ସେ ଦେବଇଁ,
ଦୀନାହୀନା ମୁହିଁ, କୃପାର ଭିଖାରି ।

ସେନା—ବୈଷ୍ଣବ ! ଏତେ ଉଦାର ତୁମ୍ଭେ ।—ଓଃ । ଏ' ପାପ
ମନରେ ଅଜି କି ତାପର ଉଦୟ ହେଉଛି ?

ବୈଷ୍ଣବୀ—ତେବେ—

( ଗୀତ )

ସେହି ତାପ ହର, ତାଙ୍କୁ ଚିନ୍ତାକର,
ସବୁ ପାପ ତାପ କରିବେ ଦୂର ।

ସେନା—ତୁମ୍ଭେ ଯେ ଏ' ଅଧମର ଦୀକ୍ଷାଗୁରୁ, ବୈଷ୍ଣବ—କୁହ,
ବୈଷ୍ଣବ ! ଗୁରୁଙ୍କୁ ମୋର କି ଦକ୍ଷିଣା ଦେବା ?

ବୈଷ୍ଣବୀ—ଦକ୍ଷିଣା !

( ଗୀତ )

ଭଜ ରାଧେକୃଷ୍ଣ, କର ମନ ତୁଷ୍ଟ
ପୁରସ୍କାର ମୋର, ହେବ ହେ ଯଥେଷ୍ଟ ।

ସେନା—ନା, ନା, ବୈଷ୍ଣବ ! ତୁମ୍ଭଙ୍କୁ କୌଣସି ଗୋଟିଏ ମୂଲ୍ୟବାନ ପଦାର୍ଥ ପୁରସ୍କାର ଦେବାକୁ ହେବ !

ବୈଷ୍ଣବୀ—

( ଗୀତ )

ସେହି ନାମ ଧନ; ଅତି ମୂଲ୍ୟବାନ
ଆନ ଧନେ ମୋର ନାହିଁ ପ୍ରୟୋଜନ ;
ଭଜ ରାଧେକୃଷ୍ଣ, ଜପ ହରେକୃଷ୍ଣ,
ରାଧାକୃଷ୍ଣ ପ୍ରେମେ ହୋଇ ଏକନିଷ୍ଠ ।

ସେନା—ନା, ନା, ମୋର ଯାହା ଯାହା ମୂଲ୍ୟବାନ ପଦାର୍ଥ ଅଛି, ସେଥି ମଧ୍ୟରୁ ତୁମକୁ ଗୋଟାଏ କିଛି ବାଛି ନେବାକୁ ହେବ ।

ବୈଷ୍ଣବୀ—ଏହି ଘର ଭିକାରୁଣୀ ପ୍ରତି ଏତେ ଅନୁଗ୍ରହ ?

ସେନା—କାହିଁ ଅନୁଗ୍ରହ ? ବୈଷ୍ଣବ ! ତୁମେ ଯେଉଁ ଅନୁଗ୍ରହ କରିଛ, ସେ ଅନୁଗ୍ରହ ବିନିମୟରେ ଯେ ଏ ପୃଥିବୀରେ ଅଦେୟ କିଛି ନାହିଁ ବୈଷ୍ଣବ—କୁହ, ବୈଷ୍ଣବ ! କି ପୁରସ୍କାର ନେବ ?

ବୈଷ୍ଣବୀ—ଏତେ ଅନୁରୋଧ ଯେବେ, ଏହି ଚିତ୍ରପଟଟି ପୁରସ୍କାର ଦିଅ ।

ସେନା—( ଚିତ୍ରପଟକୁ ଗ୍ରହି ସ୍ୱଗତ ) ଏ ଯେ ନନ୍ଦକାର ଚିତ୍ରପଟ—ସେହି ପ୍ରାଣପ୍ରିୟତମାର ଚିତ୍ରପଟ !—ଯା'ଲାଗି ଆଶ୍ରୟଦାତାଙ୍କ ମୋର, ନିଜେ ମୁହିଁ ଷଡ଼ଯନ୍ତ୍ର କରି ନିର୍ବାସିତ କରାଇଛି--ଗୋଟିଏ ଅବାଲ୍ୟ ସହଚରୀ, ଗୁପ୍ତପରଣୀତା ସରଳା ବାଳିକାର ଇହକାଳ ପରକାଳ ନଷ୍ଟ କରିଛି । ଏତେଦିନ କେମନ୍ତେ ସେ ମୋହନମୂର୍ତ୍ତିକୁ ପାଶୋରି ବସିଥିଲି ? କେମନ୍ତେ ସେ ମଧୁର ନାମକୁ ସ୍ମୃତିପଟରୁ ପର୍ଯ୍ୟନ୍ତ ଲିଭାଇ ଦେଇଥିଲି ?—ଏ'ତ ସେହି ବୈଷ୍ଣବୀ—ସେହି ରସିକା

ବିନୋଦିନୀ—ପ୍ରଥମ ସାକ୍ଷାତରେ ଯେ ରକ୍ତ ଦୃଷ୍ଟି ବୋଲି ଜୀବନାକାଶରେ ଉଦିତ ହୋଇଥିଲା—ପ୍ରଥମ କଥାବାର୍ତ୍ତାରେ ଯେ କାମଲାଲସା ମୋର ଶତଗୁଣେ ବଢ଼ାଇ ଦେଇଥିଲା, ସେହି ବୈଷ୍ଣବୀ, ପୁଣି ଶେଷେ କି ଯାଦୁ କରି ଦେଇଥିଲା—କି ମନ୍ତ୍ର ପ୍ରୟୋଗ କରି ଦେଇଥିଲା, ଯେ ପୂର୍ବଭାବ—ଦୁର୍ବିଚନ୍ତା ମୁଁ ବିସ୍ମୃତିର କେଉଁ ଅତଳ ଗର୍ଭରେ ଏକାବେଳକେ ନିମଜ୍ଜିତ କରି ଦେଇଥିଲି,—ମାନସୀ ପ୍ରତିମା ନନ୍ଦକାର ନାମ ପର୍ଯ୍ୟନ୍ତ ପାଶୋରି ପକାଇ ଥିଲି । (ପ୍ରକାଶ୍ୟ) ବୈଷ୍ଣବ ! ବୈଷ୍ଣବ ! ଏ' ଚିତ୍ରପଟ କାହିଁକି ମାଗିଲ ?—ଜାଣ ତ ତୁମ୍ଭେ ଏ' ଚିତ୍ରପଟ ମୋ ପକ୍ଷେ କେତେଦୂର ମୂଲ୍ୟବାନ ପଦାର୍ଥ ?

ବୈଷ୍ଣବୀ—ମୂଲ୍ୟବାନ ବୋଲିତ ମାଗିଲି ।

ସେନା—ତୁମେ ପରା ମୋତେ ଭେଟାଇବ ବୋଲି କଥା ଦେଇ-ଥିଲ—ଲାଭ କରାଇ ଦେବବୋଲି ପ୍ରତିଜ୍ଞା କରିଥିଲ ? ଆଜ ଏ'କି ବିପରୀତ ଆଚରଣ ତୁମ୍ଭର ?—ସ୍ମୃତି ପର୍ଯ୍ୟନ୍ତ କାଢ଼ି ନେବାକୁ ବସିଅଛ ? ତୁମ୍ଭେ କି ତୁମ୍ଭର ପ୍ରତିଜ୍ଞା ଭୁଲିଗଲ ? ଅନୁଗ୍ରହରୁ ଏକାବେଳକେ ବଞ୍ଚିତ କଲ ?

ବୈଷ୍ଣବୀ—ସେନାପତେ !—

ସେନା—'ସେନାପତେ' ବୋଲି ସମ୍ବୋଧନ କରି ତୁନି ହେଲ କାହିଁକି ? କୁହ, କୁହ ବୈଷ୍ଣବ ! ତୁମ୍ଭର କଥା ଅପ୍ରୀତିକର ହେଲେ ମଧ୍ୟ ମୋ ପକ୍ଷେ କର୍ଣ୍ଣାମୃତ ତୁଲ୍ୟ ।

ବୈଷ୍ଣବୀ—ସେନାପତେ ! ତୁମେ ଭୁଲିଯାଅ ।

ସେନା—ତୁମେତ ଭୁଲାଇ ଦେଇଥିଲ. ବୈଷ୍ଣବ !—ତୁମର ପବିତ୍ର ସଂସର୍ଗରେଇ ମୁଁ କେଉଁ ପବିତ୍ର ଭାବରେ ମଜ୍ଜି ଯାଇଥିଲି । ହଠାତ୍ ପୁଣି କାହିଁକି ସେ ପୂର୍ବଭାବ ଜାଗି ଉଠିଲା ?—

ଶନପଟ୍ଟ ଦର୍ଶନରେ କି ଏହା ଘଟିଲା ? ନା, ନା ସେ ଭାବ ଭୁଲିବାର ନୁହେଁ—ବୈଷ୍ଣବ ! ବୈଷ୍ଣବ ! ଜାଣେ ମୁଁ—ଯାହା ମୁଁ ନିଜେ କରିବାକୁ ଯାଉଛି—ଯାହା କରିବାକୁ ତୁମ୍ଭଙ୍କୁ ମୁଁ ଅନୁରୋଧ କରୁଛି, ତାହା ଶିଷ୍ଟାଗ୍ରର ବିରୁଦ୍ଧ—ଅତୀବ ଅନ୍ୟାୟ ; ମାତ୍ର ମୁଁ ଶକ୍ତିହୀନ—ମୋତେ ଦୟାକର, ବୈଷ୍ଣବ ! ତୁମର ସେଇ ରସିକାଭାବ ପୁନରାୟ ପ୍ରକାଶ କର, ରସମୟି !

ବୈଷ୍ଣବୀ—ସେନାପତେ ! ତୁମ୍ଭେ ନା ବୀର—ତୁମ୍ଭେ ନା ଯୋଦ୍ଧା !

ସେନା—ସେ ଗର୍ବ କାଲୁ, ନାଶ୍ୱ ଖର୍ବ କରୁଛି, ବୈଷ୍ଣବ !

ବୈଷ୍ଣବୀ—ଏହି କି ତୁମ୍ଭର ମନୁଷ୍ୟତ୍ୱ ?

ସେନା—ମନୁଷ୍ୟତ୍ୱ ଯେ ବହୁଦିନୁ ହରାଇଛି, ବୈଷ୍ଣବ ! ଯେଉଁଦିନୁ ( ମୁଣ୍ଡ ତଳକୁ କରିବା )—ଓଃ ହୋଃ ! କି ଅତୀତ ସ୍ମୃତି ଜାଗ୍ରତ ହେଉଛି !

ବୈଷ୍ଣବୀ—ଯେବେ ବାଧା ଥାଏ, ଶୁଣିବାର କୌଣସି ପ୍ରୟୋଜନ ନାହିଁ ସେନାପତେ !

ସେନା—ନା, ବୈଷ୍ଣବ ! ତୁମେ ମୋର ହିତାକାଙ୍କ୍ଷିଣୀ—ତୁମେ ମୋର ପ୍ରାଣ ରକ୍ଷା କରିଛ ; ତୁମକୁ କିଛି ଲୁଚାଇବି ନାହିଁ—ଗୁପ୍ତକଥା ପ୍ରକାଶ କରି, ଭାର ମଧ୍ୟ ଟିକିଏ ଲଘବ କରିଦେବି ।

ବୈଷ୍ଣବୀ—କରୁଣାନିଧିଙ୍କର କରୁଣା ଲାଭକର ।

ସେନା—ଶୁଣ ବୈଷ୍ଣବ ! ମୁଁ ଯେତେବେଳେ ନିତାନ୍ତ ଶିଶୁ—ନିତାନ୍ତ ନିଃସହାୟ—ନିରାଶ୍ରୟ କରି ପିତା ମାତା ମୋତେ ତ୍ୟାଗକରି ଇହଧାମରୁ ଚାଲିଗଲେ, କରୁଣାମୟଙ୍କ କୃପାରୁ ଏହି ରାଜ୍ୟର ପୁରାତନ ମନ୍ତ୍ରୀ ବୃଦ୍ଧ ବାସୁଦେବ—ଯା'କୁ ଚଣ୍ଡାଳ ଅଜ ନିର୍ବାସନ ରୂପ ଜୀବନ୍ମୃତ୍ୟୁ ଯନ୍ତ୍ରଣା ଦେଉଛି—ମୋତେ

ଅଦୃଷ୍ଟ ଦେଲେ, କାଳ ସର୍ପ ଅଣି ଘରେ ପୋଷିଲେ ( ବୈଷ୍ଣବୀ ଶିହରି ଉଠିବା ) ଏ' ତ ମୁଖବନ୍ଧ ବୈଷ୍ଣବ । ତା'ପରେ ଶୁଣ, ତାଙ୍କର ସେତେବେଳେ କୌଣସି ସନ୍ତାନାଦି ହୋଇ ନ ଥିବାରୁ ମୋତେ ପୁତ୍ର ନିର୍ବିଶେଷରେ ପାଳନ କରିବାକୁ ଲାଗିଲେ—ମୋତେ ଯେତେବେଳେ ଅଠବର୍ଷ, ତାଙ୍କର ଗୋଟିଏ କନ୍ୟା ଜାତ ହେଲା—ତା'ର ନାମ ଶାରଦା ।

ବୈଷ୍ଣବୀ—( କାନ୍ଦିବା )

ସେନା—ନାମ ଶୁଣି କାନ୍ଦିଲ ଯେ—ତାକୁ କଣ ତୁମେ ଚିହ୍ନ ? ସେ ଭାରି ଅଭାଗୀ ।—ଶୁଣ, କ୍ରମେ କ୍ରମେ ବୟୋବୃଦ୍ଧି ହେଲା—ଉଭୟେ ଭ୍ରାତା ଭଗ୍ନୀ ଜ୍ଞାନରେ ଖେଳିବାକୁ ଲାଗିଲୁଁ—ଜ୍ଞାନ ବୃଦ୍ଧି ସଙ୍ଗେ ସଙ୍ଗେ ପୁଣି ପରସ୍ପର ମଧ୍ୟରେ ଅପର ଭଳି ଭାବର ସଞ୍ଚାର ହେଲା—ମନ୍ତ୍ରୀ ମଧ୍ୟ ସେହି ଭାବବୃଦ୍ଧିକୁ ପ୍ରଶ୍ରୟ ଦେଲେ—ସୁତରାଂ, ମୋତେ କୋଡ଼ିଏ ବର୍ଷ, ତାକୁ ବାରବର୍ଷ ବୟସରେ—ଉଭୟଙ୍କର ମଧ୍ୟରେ ଏକପ୍ରକାର ଗାନ୍ଧର୍ବ ବିବାହ ହୋଇଗଲା ।

ବୈଷ୍ଣବୀ—ସ୍ୱାମି ! ସ୍ୱାମି ! ( ଅସ୍ଫୁଟବଚନ କରିବା )

ସେନା—ଏପରି ସମ୍ବୋଧନ କରି ଉଠିଲ କାହିଁକି, ବୈଷ୍ଣବ ?

ବୈଷ୍ଣବୀ—ମୋର ମଧ୍ୟ ଠିକ୍ ସେହିପରି ବୟସରେ ବିବାହ ହୋଇଥିଲା, ସେନାପତେ ।

ସେନା—ଅତି ଗୋପନରେ ଏ କାର୍ଯ୍ୟ ହୋଇଥିଲା—ମନ୍ତ୍ରୀମହାଶୟ ଏ ପର୍ଯ୍ୟନ୍ତ ଘୁଣାକ୍ଷରରେ ସୁଦ୍ଧା ସେ ବିଷୟ କିଛି ଜାଣନ୍ତି ନାହିଁ— ଅମ୍ଭେମାନେ କିଛିଦିନ ବଡ଼ ଆନନ୍ଦରେ ଦିନଯାପନ କରିବାକୁ ଲାଗିଲୁଁ ; ମୁଁ ତେତେବେଳେ ରାଜ-ସେନା ସମ୍ପ୍ରଦାୟ ଭୁକ୍ତ ହୋଇଥାଏ—ଦିନାନ୍ତେ ଯେତେବେଳେ ଶ୍ରାନ୍ତ, କ୍ଲାନ୍ତ ହୋଇ ଫେରି ଅସେ, ମୋର ସ୍ତ୍ରୀ—

ବୈଷ୍ଣବୀ—କିଏ, ମୁହିଁ ?—( ଅସ୍ପୃଷ୍ଟବରଣ କରିବା )

ସେନା--ତୁମକୁ ବଡ଼ ଅଧୀର ଦେଖୁଛୁ ବୈଷ୍ଣବ । କ'ଣ,ବନ୍ଦ କରିବ ?

ବୈଷ୍ଣବୀ—ନା, ନା, କୁହ କୁହ—ଅନୁରୋଧ କରୁଛି, କୁହ ।

ସେନା—ସେ ବୀଣା ବଜାଇ, ତାରସ୍ୱରରେ ଗାନ କରେ—ଠିକ୍ ତୁମରି କଣ୍ଠ, ତୁମପରି ସୁଗାୟକ—ମୁଁ ଅନନ୍ଦ ରାଜ୍ୟକୁ ଯାଇ- ଯାଏଁ । କିନ୍ତୁ ବିଧି ବାମ ହେଲେ—ରାଜକେମା ନନ୍ଦନା ସହସା ରୂପ ଯୌବନର ଭାର ନେଇ ମୋ ନୟନ ସମ୍ମୁଖରେ ଉପସ୍ଥିତା ହେଲେ—ମୁଁ ମଧ୍ୟ ସେହି ସମୟରେ ସେନାପତି ମରି ଯିବାରୁ, ରାଜାନୁଗ୍ରହରେ ଓ ମନ୍ତ୍ରୀଙ୍କ ଯତ୍ନରେ ସେନାପତି ହେଲି—ମନରେ ଗୋଟାଏ କି ଜଟିଳ ଦୁରଭିଳାଷର ଉଦୟ ହେଲା ।

ବୈଷ୍ଣବୀ—ହା, ଈଶ୍ୱର ।

ସେନା—ସୁତରାଂ ଅଶୟଦାତାଙ୍କ ଅଧୀନରେ ରହିବାକୁ ଅଉ ଇଚ୍ଛା ହେଲା ନାହିଁ—ଶାନ୍ତଦା କବଳରୁ ମଧ୍ୟ ନିଜକୁ ରକ୍ଷା କରିବା ଉଦ୍ଦେଶ୍ୟରେ, କୌଶଳରେ ମନ୍ତ୍ରୀଙ୍କ ଅନୁମତି ନେଇ ଏହିଠାରେ ବାସସ୍ଥାନ ନିରୂପଣ କଲି ।

ବୈଷ୍ଣବୀ—କି ବିଶ୍ୱାସଘାତକତା ।

ସେନା—ଏ'ତ କିଛି ହୋଇନାହିଁ—ଶୁଣ, ମନ୍ତ୍ରୀମହାଶୟ ମୋତେ ସେହିପରି ଭଲ ପାଉଥାନ୍ତି—ଶାରଦା ମଧ୍ୟ ନିଃସନ୍ଦେହରେ ପ୍ରତ୍ୟହ—ଅନେକଥର ଅପମାନ ଓ ଘୃଣାର ଭାବ ପ୍ରକାଶ କଲେ ମଧ୍ୟ, ସ୍ୱାମୀ ଜ୍ଞାନରେ ଯିବା ଅସିବା କରୁଥାଏ ।

ବୈଷ୍ଣବୀ—ଉଃ, କି ଭୟଙ୍କର ।

ସେନା—ମୁଁ କିନ୍ତୁ ଅନ୍ୟ ଭାବରେ ମଜ୍ଜିଥାଏଁ । ସର୍ବଦା ଚିନ୍ତା କରୁଥାଏଁ, ଭଲ ଭାବେ ହେଉ—ମନ୍ଦଭାବେ ହେଉ, ମୋତେ

ଏ'ମାନଙ୍କ କବଳରୁ ରକ୍ଷା କରିବାକୁ ହେବ—ବାଧି ମଧ୍ୟ ଅନୁକୂଳ ହେଲେ । ଦନେ—          ( ସୈନିକର ପ୍ରବେଶ )

ସୈନିକ—ସର୍ବନାଶ, ସେନାପତି । ଶତ୍ରୁ ନଗର ମଧ୍ୟରେ ପ୍ରବେଶ କରନ୍ତି ।'

ସେନା—ନଗର ମଧ୍ୟରେ ପ୍ରବେଶ କରନ୍ତି ?—କପରି ପ୍ରବେଶ କଲ ? ଆଉ ଶୁଣିବାର ସମୟ ନାହିଁ—ବୈଷ୍ଣବୀ । ବିଦାୟ ହେଉଛନ୍ତି—କଥା ଶେଷକରି ପାରିଲି ନାହିଁ—ପୁନରାୟ ଦେଖା ହେଲେ କହିବି—ଅନୁରୋଧ କରୁଛି, ମୋର ପାପ-କାହାଣୀ ଶୁଣି ମୋତେ ଘୃଣା କରିବ ନାହିଁ—ମୋତେ 'ରାଜଜେମାଙ୍କ ସଙ୍ଗେ ଭେଟାଅ—ମୁଁ ହାତ ଧରୁଛି, ମୋତେ ରକ୍ଷା କର—ମୋତେ ରକ୍ଷାକର—ବିଦାୟ, ବିଦାୟ ।—     ( ପ୍ରସ୍ଥାନ )

ବୈଷ୍ଣବୀ—ସତ୍ୟ ଯେ କହୁଥିଲେ "ଏ' ପାଗଳାମି"—ନିଶ୍ଚୟ ଏ' ପାଗଳାମି, ବଡ଼ ପାଗଳାମି—ଏ' ପାଗଳାମି ଛଡ଼ାଇବାର ଔଷଧି ନାହିଁ । ଅନୁତାପ ରୂପ ଶାସ୍ତି ବିଧାନର ଉପାୟ କରୁଥିଲି, ହେଲନାହିଁ—ପିତାଙ୍କର ଶାସ୍ତି କରଣୀୟ—ତାହାହିଁ ଉପଯୁକ୍ତ ଶାସ୍ତି—ଉଃ । ମୁଁ କଣ କରୁଥିଲି ? ପିତାଙ୍କ ଆଜ୍ଞା ଅବଜ୍ଞା କରି ଅନ୍ୟ ପ୍ରକାର କାପର କରିବାକୁ ଯାଉଥିଲି ? ମନ । ଅଦ୍ୟାପି କଣ ତୁ ଦୃଢ଼ ହୋଇ ନାହୁଁ ?—ପିତୃହନ୍ତା ପ୍ରତି ତୁ ଅଦ୍ୟାବଧି ଦୟା ପ୍ରକାଶ କରିବାକୁ କଣ ଅକୁଣ୍ଠିତ ? ଅଭ ନୁହେ—ଯାଅ, ପ୍ରେମ, ସ୍ନେହ—ହର କୋପାନଳେ ମଦନ ସମାନ ଭସ୍ମୀଭୂତ ହୋଇଯାଅ ।—ଜାଗ୍ରତ ଘୃଣା, ହିଂସା—ସମସ୍ତ ଶୟତାନ ପ୍ରବୃତ୍ତି ଯେନ ଜାଗି ଉଠ ।—କନ୍ୟା ଆଜି ପ୍ରତିଶୋଧ ନେବ, ପିତୃହନ୍ତା ପ୍ରତି ।

( ବେଗେ ପ୍ରସ୍ଥାନ )

## ଚତୁର୍ଥ ଦୃଶ୍ୟ

[ ଯୁଦ୍ଧସ୍ଥଳ ]

( ଉତ୍କଳୀୟ ସୈନ୍ୟଗଣଙ୍କର ପ୍ରବେଶ )

୧ମ ସୈନ୍ୟ—ଉଃ । ମଣିଷ ଟିକିଏ ନିଶ୍ୱାସ ମାରିଲା ଅସି !

୨ୟ ,, —ଆଉ ଘୋଡ଼ାଇ ନାହାନ୍ତି ତ ?

୩ୟ ,, —ନା, ନା, କେହୁ ନାହାନ୍ତି—ଟିକିଏ ବସ ମ ।

( ସମସ୍ତେ ଉପବେଶନ କରିବା )

୧ମ ”—ଭାଇ ! କପାଳରେ ନିଶ୍ଚୟ କାଉ ଉଡ଼ିଲାଣି !

୨ୟ ”—ଧଡ଼ରେ କଣ ଆଉ ପ୍ରାଣ ଅଛି ?

୩ୟ ”—ତାହାଙ୍କ ଭଳି ଆମେ କାଲି ହୁସିଆର ନ ହେଲୁଁ ?

୧ମ ”—କିଏ ଜାଣିଥିଲା, ଭାଇ, ଭାଙ୍ଗ ନିଶାଟା ଏତେ ଜବର ହେବ ବୋଲି ?

୨ୟ ,,—ଚର ଗୁଡାକ ବି କ’ଣ ହୁସିଆର ନ ଥିଲେ ?

୩ୟ ,,—ଅରେ ଭାଇ ! କାଲି କ’ଣ କେହୁ ବାକି ଥିଲେ ? ଜଗତରୁ ବୋଲି ଲଗାମ ଯେମିତି ଟିକିଏ ଢିଲା ହୋଇଛି, ଆଉ କଣ କେହୁ ବାକି ରହୁଛନ୍ତି ?

୨ୟ ,,—ମୁଁ ମନେ କରିଥିଲି, ଭାଇ ! ଶଳାଏ ପଳେଇ ଗଲେଣି—ପ୍ରାଣ ଥାଉଁ ଥାଉଁ ଅଉ ଫେରୁ ନାହାନ୍ତି ।

୧ମ ,,—ନା ଦେଖ, ଏକାବେଳକେ କାଲ୍ଲା ଭିତରେ ଅସି ହାଜର !

୨ୟ ,,—ରାଜା ତ ଶୁଣିବେଣି ?

୩ୟ ,,—ଶୁଣିବେଣି କ’ଣ—ଦେଖିଲ କିଏ ଏଣେ ଅସୁଛନ୍ତି ?

( ଭୟକମ୍ପିତ କଳେବରରେ ସମସ୍ତେ ଛିଡ଼ାହେବା )

[ ସୁବର୍ଣ୍ଣ କେଶରୀଙ୍କର ପ୍ରବେଶ ]

ସୈନ୍ୟଗଣ—ଦୋହାଇ, ମହାରାଜ ! ଦୋହାଇ, ମହାରାଜ !

ସୁବର୍ଣ୍ଣ—( ବଦ୍ର ପ୍ରସ୍ତରେ ) କିଏ ତୁମ୍ଭର ମହାରାଜ, ଫେରୁଦଳ ?

ସୈନ୍ୟଗଣ—ମହାରାଜ ! ମହାରାଜ !

ସୁବର୍ଣ୍ଣ—କେଶରୀ କେବେ ଫେରୁଦଳର ରାଜା ହୁଏ ନାହିଁ ! ଶୃଗାଳଗଣ ! ବାଟ ଛାଡ଼ିଦିଅ—କେଶରୀ ଆଜ ଏକାକୀ ଶତ୍ରୁ ସଙ୍ଗେ ଯୁଦ୍ଧ କରିବାକୁ ବାହାରିଛି ।

ସୈନ୍ୟଗଣ—ମହାରାଜ ! ମହାରାଜ !

ସୁବର୍ଣ୍ଣ—ମନେ କରୁଛ କି, ଭୀରୁଗଣ ! ଏହି ଗଳିତ-ନଖର-ଦଶନ କେଶରୀ ଆଜ ଦୁଃସାହସ କରୁଛି ? ଏ' ଦୁଃସାହସ ନୁହେଁ—କଦାପି ତା ମନେକର ନାହିଁ; ମନେ ଯଦି କରୁଥାଅ, ତେବେ ଏହିକ୍ଷଣି ପରୀକ୍ଷା କରି ନେଇ ପାର—ଶତ ଶତ ବଳ-ବୀର୍ଯ୍ୟସମ୍ପନ୍ନ ଯୁବକ ତୁମ୍ଭେମାନେ ଏକ ପାର୍ଶ୍ୱେ ଛିଡ଼ା ହୁଅ, ଅନ୍ୟ ପାର୍ଶ୍ୱେ ଏହି ଜରାଜୀର୍ଣ୍ଣ କଙ୍କାଳସାର କେଶରୀ ଏକାକୀ ଛିଡ଼ା ହେଉଛି ।

( ବୀର ବିକ୍ରମେ ଦଣ୍ଡାୟମାନ ହେବା )

ସୈନ୍ୟଗଣ—ମହାରାଜ ! ମହାରାଜ !

ସୁବର୍ଣ୍ଣ—ଏ' କ'ଣ ? ଯୁବକ ତୁମ୍ଭେମାନେ—ବଳିଷ୍ଠ ତୁମ୍ଭେମାନେ ସାହସ ହେଉ ନାହିଁ ? ଦମ୍ଭ ହେଉନାହିଁ ?—ହେବ କିପରି ? ଫେରୁ ଦଳର ଏତେ ସାହସ ହେବ କିପରି ? ବାଟ ଛାଡ଼ି-ଦିଅ, ଭୀରୁଗଣ ! ମୁଁ ଏକାକୀ ଯୁଦ୍ଧ କରିବି—କେଶରୀ ଜୀବିତ ଥାଉଁ ଥାଉଁ, ଶତ୍ରୁ କେବେ ତାର ଗହ୍ୱର ଅଧିକାର ପାରିବ ନାହିଁ ।

( ବେଗେ ପ୍ରସ୍ଥାନୋଦ୍ୟତ—ବୀରଚନ୍ଦ୍ରର ବେଗେ ପ୍ରବେଶ )

ବୀରେନ୍ଦ୍ର—ମହାରାଜ ! ମହାରାଜ ! ସ୍ଥିର ହେଉନ୍ତୁ !

ସୁବର୍ଣ୍ଣ—ସ୍ଥିର ହେବାକୁ କହୁଛ, ସେନାପତେ ? ସ୍ଥିର ହେବି ?

ବୀରେନ୍ଦ୍ର—ମହାରାଜ ! ମହାରାଜ ! ସ୍ଥିର ହେଉନ୍ତୁ !

ସୁବର୍ଣ୍ଣ—ସ୍ଥିର ହୋଇ ଦେଖିବି କ'ଣ ?—ଯେଉଁ ଓଡ଼ିଆମାନଙ୍କର ପିତୃପିତାମହ ଅହୋରାତ୍ର ଅକ୍ଲାନ୍ତ ପରିଶ୍ରମ କରି ବିନା ନିଦ୍ରାରେ ବିନାଭୋଜନରେ ମାତୃଭୂମି ପାଇଁ ସ୍ୱାଧୀନତା ଧନ ଅର୍ଜନ କରି ଯାଇଥିଲେ, ସେହି ଓଡ଼ିଆମାନେ ଆଜି ବିଳାସୀ, ଅଳସ, ଅପଦାର୍ଥ ହୋଇ ଅବଲୀଳାକ୍ରମେ ସେହି ସ୍ୱାଧୀନତା ଧନ ଶତ୍ରୁ କରପୃଷ୍ଠରେ ଅର୍ପଣ କରୁଛନ୍ତି—ଯେଉଁ ଓଡ଼ିଆଜାତିର ପୂର୍ବପୁରୁଷମାନେ ଦିନେ ଶିଳ୍ପ-ନୈପୁଣ୍ୟର ପରାକାଷ୍ଠା ଖଣ୍ଡଗିରି, କୋଣାର୍କ, ଭୁବନେଶ୍ୱର ଓ ପୁରୀର ମନ୍ଦିର ନିର୍ମାଣ କରି, ଜଗତକୁ ସ୍ତମ୍ଭିତ କରି ଦେଇଥିଲେ, ସେହି ଓଡ଼ିଆଜାତି ଆଜି ଅନ୍ତତ କେତେ ସେହି ଅମୂଲ୍ୟ ସମ୍ପଦର ଧ୍ୱଂସ ଦେଖିବାକୁ ତଳେମାନ କୁଣ୍ଠିତ ହେଉ ନାହିଁ ? ଯେଉଁ ଓଡ଼ିଆ ବୀରଗଣ ଦିନେ ସମ୍ମୁଖ ସମରରେ କେଶରୀବିକ୍ରମରେ ଯୁଦ୍ଧ କରି ଆନନ୍ଦ ଉପଭୋଗ କରୁଥିଲେ, ସେହି ଓଡ଼ିଆମାନଙ୍କର ବଂଶଧର ଗଣ ଆଜି ଶୃଗାଳ ସମ ପୁଚ୍ଛାନ୍ଦୋଳନ ପୂର୍ବକ ପଳାୟନରେ ଆନନ୍ଦ ଉପଭୋଗ କରୁଛନ୍ତି—ଏହାହିଁ କ'ଣ ସ୍ଥିରହୋଇ ଦେଖିବି, ସେନାପତେ ?

ସୈନ୍ୟଗଣ—ମହାରାଜ ! ଆପଣଙ୍କର ଶ୍ରୀଚରଣ ଧରି ଅନୁନୟ କରୁଛୁ, ଏ ଅଧମ ଦାସମାନଙ୍କୁ ଏହି ପ୍ରଥମ ଥର ପାଇଁ କ୍ଷମା କରନ୍ତୁ !

ବୀରେନ୍ଦ୍ର—ଏ' ଅଧମ ମଧ୍ୟ ସେମାନଙ୍କର ପକ୍ଷ ନେଇ ପ୍ରାର୍ଥନା କରୁଛି, ମହାରାଜ !

ସୁବର୍ଣ୍ଣ—ତେବେ ଯାଅ; ବୀରଗଣ ! ପ୍ରକୃତ ଯେବେ ତୁମ୍ଭେମାନେ କଳିଙ୍ଗର ସନ୍ତାନ ହୋଇ ଥାଅ—ଓଡ଼ିଆ ବୋଲି ପରିଚୟ ଦେବାରେ ଗୌରବ ଅନୁଭବ କରୁଥାଅ, ତେବେ ମାତୃଭୂମି ରକ୍ଷା କରିବା ନିମନ୍ତେ—ଓଡ଼ିଆ ନାମ ସାର୍ଥକ କରିବା ନିମନ୍ତେ ଯୁଦ୍ଧ ଭୂମିକୁ ଅଗ୍ରସର ହୁଅ—ବୀର ଦର୍ପେ ଶତ୍ରୁ ସମ୍ମୁଖରେ ଦଣ୍ଡାୟମାନ ହୁଅ—ସମସ୍ୱରେ, ସମସ୍ୱରେ ଥରେ ଚିତ୍କାରକର ଜପ 'ଶରୀରଂ ବା ପାତୟେତ୍, କାର୍ଯ୍ୟଂ ବା ସାଧୟେତ୍' ।

ସୈନ୍ୟଗଣ—ଶରୀରଂ ବା—

ବୀରେନ୍ଦ୍ର—ଚୁପ୍—ମହାରାଜ ! ଶତ୍ରୁମାନେ ଅଦୂରରେ ଅଛନ୍ତି, ଚିତ୍କାର ଶୁଣି ଏଠାକୁ ଧାଇଁ ଆସିପାରନ୍ତି । ସୈନ୍ୟସଂଖ୍ୟାରେ ସେମାନେ ପ୍ରାୟ ଦୁଇଗୁଣ ହେବେ—ସୁତରାଂ ଅମ୍ଭେମାନେ ଶୀଘ୍ର ଗୋଟିଏ ଉଚ୍ଚସ୍ଥାନ ଅଧିକାର ନ କଲେ, ସୁବିଧା ହେବ ନାହିଁ । ଆଦେଶ ଦିଅନ୍ତୁ, ଅମ୍ଭେମାନେ ନିଃଶବ୍ଦରେ, ଶତ୍ରୁର ଅଲକ୍ଷରେ ସେପରି ଗୋଟିଏ ସ୍ଥାନ ଅଧିକାର କରୁଁ ।

ସୁବର୍ଣ୍ଣ—ଅଚ୍ଛା, ତାହାହିଁ ହେଉ-ତୁମ୍ଭେ ସୈନ୍ୟମାନଙ୍କୁ ନେଇ ଶୀଘ୍ର ଯାତ୍ରା କର—ମୁଁ ଦୁର୍ଗରକ୍ଷାର ସୁବ୍ୟବସ୍ଥା କରି ଶୀଘ୍ର ଫେରୁଛି ।
(ସୁବର୍ଣ୍ଣକେଶରୀଙ୍କର ପ୍ରସ୍ଥାନ)

ବୀରେନ୍ଦ୍ର—(ସ୍ୱଗତ) ଦୁର୍ଗ କଥାରୁ ଦୁର୍ଗ-ଦେବୀ ଯେ ମନେ ପଡ଼ି ଯାଉଛନ୍ତି—(ପ୍ରକାଶ୍ୟେ) ଚାଲ ସୈନ୍ୟଗଣ ।

(ସୈନ୍ୟମାନଙ୍କର ସହିତ ଅନ୍ୟଦିଗେ ପ୍ରସ୍ଥାନ)

---

## ପଞ୍ଚମ ଦୃଶ୍ୟ

[ ଯୁଦ୍ଧକ୍ଷେତ୍ରର ଅପରାଂଶ—କର୍ଣ୍ଣାଟ-ସେନାପତି ଓ କର୍ଣ୍ଣାଟ
ସୈନ୍ୟଗଣ ଦଣ୍ଡାୟମାନ ]

୧ମ-ସୈନ୍ୟ—କାହିଁ, ସେନାପତି ! ଗୋଟିଏ ସୁଦ୍ଧା ଶତ୍ରୁସେନା ଦେଖା ଯାଉ ନାହାନ୍ତି ତ ?

ସେନାପତି—ତୁମ୍ଭେମାନେ ତ ଗୋଡ଼ାଇ ଥିଲ, ହଠାତ୍ ରହିଗଲ କାହିଁକି ?

୧ମ-ସୈନ୍ୟ—ସେମାନେ ଏହି ଜଙ୍ଗଲର ମୋଡ଼ରେ କେଉଁଆଡ଼େ ଯେ ଉଭେଇ ଗଲେ, ଅମ୍ଭେମାନେ ଏ'ପର୍ଯ୍ୟନ୍ତ ଖୋଜି ଖୋଜି ପାଉନାହୁଁ ।

ସେନା—ମହାରାଜ କେଉଁଆଡ଼େ ଗଲେ ?

୨ୟ-ସୈନ୍ୟ—ମହାରାଜ କେତେକ ସୈନ୍ୟ ନେଇ ଦୁର୍ଗ ଅଭିମୁଖେ ଧାଇଁଥିଲେ—

ସେନା—ମୁଁ ଟିକିଏ ସ୍ଥାନର ଧାରଣା କରୁଁ କରୁଁ ପଛକୁ ପଡ଼ିଗଲି, ତୁମ୍ଭେମାନେ ଇତିମଧ୍ୟରେ ଏପରି ଥକାମାରି ରହିଗଲ ?

୧ମ-ସୈନ୍ୟ—ଯା' ବା ଖୋଜିଥାନ୍ତୁ, ଅନେକଙ୍କୁ ନ ଦେଖିବାରୁ ଗୋଡ଼ ଆଉ ଆଗ ମାଡ଼ିଲା ନାହିଁ ।

ସେନା—ଅଚ୍ଛା ଏହି ଢିପ ଉପରକୁ ଉଠିଲେ, ସେଠାରୁ ନିଶ୍ଚୟ ଶତ୍ରୁ-ସେନା ଦେଖାଯିବେ—ଅଧିକନ୍ତୁ ମଧ୍ୟ ଯୁଦ୍ଧ ଓ ଆଶ୍ରୟ ନିମନ୍ତେ ଏହା ଭାରି ନିରାପଦ ସ୍ଥାନ ।

(ସୈନ୍ୟମାନଙ୍କର ଅଗ୍ରସର ହେବା)

ନେପଥ୍ୟେ }
ବୀରେନ୍ଦ୍ର } ଚଳାଅ ପଥର । (ପ୍ରସ୍ତର ନିକ୍ଷେପ)

ସେନା—ହଟିଅସ, ସୈନ୍ୟଗଣ । ଶୀଘ୍ର ହଟିଅସ—ଉପରେ ଶତ୍ରୁ ।
[ କର୍ଣ୍ଣାଟ-ସୈନ୍ୟମାନଙ୍କ ମଧ୍ୟରୁ ଅନେକେ ଭୂପତିତ ହେବା ]
(ବୀରେନ୍ଦ୍ରର ସସୈନ୍ୟେ ପ୍ରବେଶ)

ବୀରେନ୍ଦ୍ର—ଅନୁଧାବନ କର, ସୈନ୍ୟଗଣ । ଶତ୍ରୁସେନା ଅତି ଅଳ୍ପ ।

ସେନା—ପଳାଅ, ପଳାଅ, ସୈନ୍ୟଗଣ ।—ଆଉ ଉପାୟ ନାହିଁ—ଆଉ ଉପାୟ ନାହିଁ ।

(କର୍ଣ୍ଣାଟ ସୈନ୍ୟମାନେ ପଳାୟନୋଦ୍ୟତ)

(ଗୌରଗଙ୍ଗଙ୍କର ସସୈନ୍ୟେ ପ୍ରବେଶ)

ଗୌର—ଭୟ ନାହିଁ, ସୈନ୍ୟଗଣ ।—ଫେର—ଫେର, ଯୁଦ୍ଧକର—ଶତ୍ରୁସେନା ସ୍ତୂପରୁ ଓହ୍ଲାଇବା ପର୍ଯ୍ୟନ୍ତ ମୁଁ ଅପେକ୍ଷା କରୁଥିଲି—ଏଥର ସମସ୍ତେ ସମତଳ ଭୂମିରେ—ସମ୍ମୁଖ-ଯୁଦ୍ଧରେ ଅଗ୍ରସର ହୁଅ ।

କର୍ଣ୍ଣାଟ-ସୈନ୍ୟ—"ଜୟ ଗୌରଗଙ୍ଗଦେବଙ୍କର ଜୟ"

ବୀରେନ୍ଦ୍ର—(ସ୍ୱଗତ) ଏତେ ସୈନ୍ୟ । (ପ୍ରକାଶ୍ୟେ) କର ଆକ୍ରମଣ; ସୈନ୍ୟଗଣ—ଜୟ କାମ୍ବା ମୃତ୍ୟୁ ଅମ୍ଭମାନଙ୍କର ପଣ ହେଉ ।
[ଉତ୍କଳୀୟ ସୈନ୍ୟଗଣ ନିଶ୍ଚଳ ଭାବେ ଠିଆହେବା]

କ: ସୈନ୍ୟ—ମାର, ମାର (ଆକ୍ରମଣ କରିବାକୁ ଧାଇଁବା)

ଗୌର—କ୍ଷାନ୍ତ ହୁଅ, ବୀରଗଣ । ଶତ୍ରୁସେନାଙ୍କୁ ଆଗେ ପ୍ରସ୍ତୁତ ହେବାକୁ ଅବସର ଦିଅ ।

ସେନା—ଅମ୍ଭେମାନେ ଅପ୍ରସ୍ତୁତ ଥିବା ଅବସ୍ଥାରେ, ସେମାନେ ଯେ ଅମ୍ଭମାନଙ୍କୁ ଆକ୍ରମଣ କରିଥିଲେ, ମହାରାଜ ।

ଗୌର—ସେମାନେ ଚୌର୍ଯ୍ୟ କରିଥିଲେ ବୋଲି କ'ଣ ଅମ୍ଭେମାନେ ମଧ୍ୟ ଚୌର୍ଯ୍ୟ କରିବା, ସେନାପତେ ?

ବୀରେନ୍ଦ୍ର—କିନ୍ତୁ ପ୍ରକୃତ ଶୌର୍ଯ୍ୟ କିଏ, ଥରେ କହନ୍ତୁ ମହାରାଜ ? ଗହନରେ, ଗୋପନରେ, ଅତର୍କିତାବସ୍ଥାରେ—ବଳ ଉଲ୍ଲଙ୍ଘନ ପୂର୍ବକ ଆକ୍ରମଣ—ସେ କି ଶୌର୍ଯ୍ୟ ନୁହେଁ ?

ଶେର—କିଏ କହେ ଶୌର୍ଯ୍ୟ ? ତାହା କୌଶଳ ମାତ୍ର ।

ସେନା—ମହାରାଜ ! ଅପ୍ରସ୍ତୁତ ଅବସ୍ଥାରେ ଶତ୍ରୁନାଶ କରିବା, କୌଶଳ ନୁହେଁ ?

ଶେର—କିପରି ? ସମାନ କ୍ଷେତ୍ରରେ, ସମାନ ବଳରେ ସମ୍ମୁଖଯୁଦ୍ଧ ନିମନ୍ତେ ଉଭୟ ପକ୍ଷ ଦଣ୍ଡାୟମାନ—ଏକପକ୍ଷ ଜୀବନ୍ମୃତାସ୍ତ୍ର, ଅନ୍ୟ ପକ୍ଷ ବଳାପି—ଏକପକ୍ଷ ଯୁଦ୍ଧୋଦ୍ୟତ, ଅନ୍ୟପକ୍ଷ ଅବସାଦଗ୍ରସ୍ତ—ଏ'ପରି ଅବସ୍ଥାରେ ଶତ୍ରୁନାଶ କି କୌଶଳ ? ଏହା ନରହତ୍ୟା ! ନରହତ୍ୟା !

ବୀରେନ୍ଦ୍ର—(ସହାସ୍ୟେ) ଆପଣ ତେବେ କାହାକୁ କୌଶଳ କହନ୍ତି ?

ଶେର—ଶତ୍ରୁ ଯେବେ ସମାନ-କ୍ଷେତ୍ର—ସମାନ ଅଧିକାର ନଦେଇ ଅବୈଧ ଯୁଦ୍ଧରେ ପ୍ରବୃତ୍ତ ହୁଏ, ଶତ୍ରୁର ସେହି ଅବୈଧତା ନାଶକରି, ତାକୁ ସମାନ କ୍ଷେତ୍ରରେ—ସମାନ ଅଧିକାରରେ ଆନୟନୋପାୟର ନାମ କୌଶଳ—ମୁଁ ତାହାହିଁ କରିଥିଲି । ଯାଉ, ଏବେ ପ୍ରସ୍ତୁତ ହୁଅ ବୀର !

ବୀରେନ୍ଦ୍ର—(ସ୍ୱଗତ) ସମ୍ମୁଖେ ସାଗର ପ୍ରମାଣ ସୈନ୍ୟ—ପଶ୍ଚାତରେ ଦୁର୍ବଳଯାନରୂପୀ ସ୍ରୋତସ୍ୱିନୀ—ଉପାୟ କଣ ? ଉପାୟ କଣ ?

ଶେର—ସେନାପତେ । ଅଉ ଭାବୁଛ କଣ ? ଅସ୍ତ୍ର ସମର୍ପଣ, ଅଧୁନା ଏକମାତ୍ର ଉପାୟ ।

ବୀରେନ୍ଦ୍ର—ଅସ୍ତ୍ରସମର୍ପଣ ।

ଶେର—ଉପାୟ ନାହିଁ—ବୃଥାରେ ପ୍ରାଣ ଦେବା ଅପେକ୍ଷା ଅସ୍ତ୍ର-ସମର୍ପଣ ଶତଗୁଣେ ଶ୍ରେୟସ୍କର—ସୈନ୍ୟଗଣ । ବିନା ଅସ୍ତ୍ର

ସୁଯୋଗରେ ସମସ୍ତଙ୍କୁ ବନ୍ଦୀକର । (କର୍ଣ୍ଣାଟ ସୈନ୍ୟଗଣ ବେଷ୍ଟନ କରିବାକୁ ଅଗ୍ରସର ହେଲେ । ଉତ୍କଳୀୟ ସୈନ୍ୟପ୍ରତି) ତୁମ୍ଭ ମାନଙ୍କର ଅସ୍ତ୍ର ସମୂହ ଅର୍ପଣ କର, ବୀରଗଣ ।

[ ବୀରବୃନ୍ଦ ଅଧୋବଦନରେ ଛିଡ଼ାହେବା ଓ ଉତ୍କଳୀୟ ସୈନ୍ୟଗଣ ଅସ୍ତ୍ର ଅର୍ପଣ କରିବାକୁ ଉଦ୍ୟତ ହେବା ]

( ସୁବର୍ଣ୍ଣକେଶରୀଙ୍କର ସସୈନ୍ୟେ ବେଗେ ପ୍ରବେଶ )

ସୁବର୍ଣ୍ଣ—ଧୀରେ ଭ୍ରାତୃଗଣ ! ଧୀରେ ବେଷ୍ଟନକର, ବୈରୀଗଣ—

ଉଃସୈନ୍ୟଗଣ—ମହାରାଜ । ମହାରାଜ ।

ସୁବର୍ଣ୍ଣ—ଫେରୁଦଳର ମହାରାଜ କେଶରୀ କେବେ ହୋଇପାରେ ନାହିଁ, ଭ୍ରାତୃଗଣ ।

ଉଃସୈନ୍ୟ—ଉପାୟାନ୍ତର'ନ ଦେଖି, ଅସ୍ତ୍ରସମର୍ପଣ—

ସୁବର୍ଣ୍ଣ—ଚୁପକର, ଶୃଗାଳଗଣ ! ଏହି ଲଜ୍ଜାଜନକ ପଦ ଉଚ୍ଚାରଣ କରିବା ପୂର୍ବେ ଜିହ୍ୱା ତୁମ୍ଭମାନଙ୍କର ସଙ୍କୁଚିତ ହୋଇଗଲା ନାହିଁ । ଶତ୍ରୁ ସମ୍ମୁଖରେ ଅବନତ ସ୍ୱୀକାର କରିବା ପୂର୍ବେ ପ୍ରାଣବାୟୁ ତୁମ୍ଭମାନଙ୍କର ଶୂନ୍ୟ ସଙ୍ଗେ ମିଶିଗଲା ନାହିଁ ? ଏହିପରି ଭାବେ ବିଦେଶୀ ସମ୍ମୁଖରେ ବୀରତ୍ୱର ପରିଚୟ ଦେବାକୁ ଦଣ୍ଡାୟମାନ ହେଲ, କେଶରୀ ସୈନ୍ୟଗଣ— ଏହିପରି ଭାବେ ଜାତୀୟ ଗୌରବର ପରିଚୟ ଦେବାକୁ ଗର୍ବ ବୋଧ କଲ, କେଶରୀ ଓଡ଼ିଆଗଣ ? ଧିକ୍, ଧିକ୍ ତୁମ୍ଭମାନଙ୍କୁ— ଧିକ୍, ଧିକ୍, ଆଜି ତୁମ୍ଭମାନଙ୍କର କ୍ଷତ୍ରିୟ ଜୀବନକୁ । ବୈରୀଗଣ ! ପ୍ରକୃତରେ ଯେବେ ତୁମ୍ଭେମାନେ ବୀର ହୋଇଥାଅ, ତେବେ ବୀରର ସହିତ ଯୁଦ୍ଧ କର ବୀରତ୍ୱର ପରିଚୟ ଦିଅ— କେଶରୀ ସହିତ ଯୁଦ୍ଧକରି ନିଜର ସମ୍ମାନ ରକ୍ଷାକର ।

ଗ୍ରେର—ଏହିତ ବୀରର ଉପଯୁକ୍ତ ବାଣୀ ।
୧ମ ସୈନ୍ୟ-ଜୟ ଗ୍ରେରଙ୍ଗଙ୍କର ଜୟ !
୨ୟ ସୈନ୍ୟ-ଜୟ ସୁବର୍ଣ୍ଣକେଶରୀଙ୍କର ଜୟ ।

[ ଉଭୟପକ୍ଷ ଯୁଦ୍ଧରେ ପ୍ରବୃତ୍ତ ହେବାକାଳେ ନନ୍ଦକାର ବେଗରେ ପ୍ରବେଶ ]

ନନ୍ଦକା—କ୍ଷଣକାଳପାଇଁ କ୍ଷାନ୍ତ ହେଉନ୍ତୁ, ବୀରଗଣ !
ସୁବର୍ଣ୍ଣ—ମା ! ମା ! ତୁ ଏଠି କାହିଁକି ? ହେ ବୀରଗଣ ! କ୍ଷଣକାଳ ପାଇଁ ଅପେକ୍ଷା କର, ମାକୁ ମୋର ଟିକିଏ ନିରାପଦ ସ୍ଥାନକୁ ପଠାଇବାର ଅବସର ଦିଅ ।
ଗ୍ରେର—କିଛି ଆପତ୍ତି ନାହିଁ, ବୀର ! ନାରୀର ସମ୍ମାନ ସର୍ବାଗ୍ରେ ରକ୍ଷଣୀୟ ।
ସୁବର୍ଣ୍ଣ—ଅ, ମା—
ନନ୍ଦକା—ବାବା ! କିଛି ଭୟ କରନ୍ତୁ ନାହିଁ—ମୁଁ ଏ ପାଶବିକ ହତ୍ୟାକାଣ୍ଡ ଦେଖିବାକୁ ଉଚ୍ଛେମାନ ଠିଆ ହେବ ନାହିଁ—କେବଳ ଗୋଟିଏ ପ୍ରଶ୍ନର ଉତ୍ତର ଶୁଣି ପାରିଲେ, ସାନନ୍ଦେ ଏ'ସ୍ଥାନ ତ୍ୟାଗ କରିବି ।
ସୁବର୍ଣ୍ଣ—କି ପ୍ରଶ୍ନ ? କାହାକୁ ?
ନନ୍ଦକା—ଉଭୟ ପକ୍ଷକୁ ! ହେ ବୀରଗଣ ! ଅନୁଗ୍ରହ ପୂର୍ବକ ଥରେ କହିବେ କି ଉଭୟ ମହାଜନ, ଆଜ କେଉଁ କାରଣରୁ ଏହି ହତ୍ୟାକାଣ୍ଡରେ ପ୍ରବୃତ୍ତ, କେଉଁ କାରଣରୁ ଲକ୍ଷ ଲକ୍ଷ ପ୍ରାଣ ବଳି ଦେବାକୁ ଆଜ ଉଦ୍ୟତ ?—ସର୍ବାଗ୍ରେ କର୍ଣ୍ଣାଟପତିଙ୍କର କି ଉତ୍ତର ?
ଗ୍ରେର—ଆପଣଙ୍କର ପିତାଙ୍କୁ ପଚାରନ୍ତୁ ।

ନନ୍ଦକା—ପଶ୍ଚୁରିବ କଣ, ବୀରେନ୍ଦ୍ର ? ମୁଁ ଜାଣେ, ଅପଣ ଚାହାନ୍ତି, ଅପମାନର ପ୍ରତିଶୋଧ ନେବାକୁ ଓ ବଳପୂର୍ବକ ପିତୃବକ୍ଷରୁ କନ୍ୟାକୁ ଛିନ୍ନିଲା କରି ନେବାକୁ—ଅଙ୍କ ( ସୁବର୍ଣ୍ଣ ଅଡ଼େ ଚାହିଁ ) ଅପଣ ଚାହାଁନ୍ତି, ମହାରାଜ ! ରାଜ୍ୟ, ସଂସାର, ପ୍ରାଣଗଲେ ସୁଦ୍ଧା କନ୍ୟାକୁ ନିଜବକ୍ଷରେ ଚାପି ରଖିବାକୁ ।

ସୁବର୍ଣ୍ଣ—ମା ! ମା ! କନ୍ୟା ମୋର—(ଅଲିଙ୍ଗନ କରିବାକୁ ଯିବା)

ନନ୍ଦକା—ଅସ୍ଥିର ହେଉନ୍ତୁ ନାହିଁ,ମହାରାଜ ! ଏହାହିଁ ଯେବେ ଅପଣ ମାନଙ୍କର ବିବାଦର କାରଣ ହୁଏ, ତେବେ ହେ ବୀରଗଣ ! ଏହି କଳହର ମୀମାଂସା ଅନ୍ୟ ଉପାୟରେ କି ସମ୍ଭବ ହୋଇ ପାରେ ନାହିଁ ?

ଭୈରବ—ଏହି ଯୁଦ୍ଧହିଁ ଏକମାତ୍ର ଉପାୟ, ଅର୍ଯ୍ୟେ !

ସୁବର୍ଣ୍ଣ—ମା ! ତୁ ଏଠୁଁ ଚାଲିଯା ।

ନନ୍ଦକା—ଏତେ ଲୋକ ନିୟୋଗରେ ତେବେ କି ପ୍ରୟୋଜନ ?

ଭୈରବ—ଯୁଦ୍ଧ, ତା' ନ ହେଲେ ସମ୍ଭବ ହେବ କିପରି ?

ନନ୍ଦକା—ଅପଣମାନେ ଯେ ସ୍ୱାର୍ଥଯୋଗେ ଯୁଦ୍ଧ କରୁଛନ୍ତି ?

ଭୈରବ—ସ୍ୱାର୍ଥ ଛଡ଼ା କେହି କେବେ ଯୁଦ୍ଧ କରେ ନାହିଁ, ଅର୍ଯ୍ୟେ

ନନ୍ଦକା—ଏ' ନିରୀହ ପ୍ରଜାଗୁଡ଼ାଙ୍କର ତେବେ ଏଥିରେ କି ସ୍ୱାର୍ଥ ?

ଭୈରବ—ରାଜାର ସ୍ୱାର୍ଥହିଁ ପ୍ରତ୍ୟେକ ରାଜଭକ୍ତ ପ୍ରଜାର ସ୍ୱାର୍ଥ ।

ନନ୍ଦକା—ମାତ୍ର ଏ'ଠାରେ ରାଜାର ସ୍ୱାର୍ଥ କି ବ୍ୟକ୍ତିଗତ ନୁହେ ?— ସମଗ୍ର ରାଜ୍ୟଗତ ଦୂରର କଥା, କୌଣସି ଜଣେ ସୁଦ୍ଧା ପ୍ରଜାର ଏଥିରେ କି ତିଳେ ମାତ୍ର ସ୍ୱାର୍ଥ ଅଛି ?

ଭୈରବ—( ସ୍ୱଗତ ) ବିଦୁଷୀ ଏ' ବାଳିକା ।

ସୁବର୍ଣ୍ଣ—ମା ! ତୁ ଚାଲିଯା—ଏ' ସବୁ ରାଜନୈତିକ ବିଷୟ ଭାରି ଜଟିଳ—ତୁ କ'ଣ ବୁଝିବୁ ?

ନନ୍ଦକା—ନୀରବ ହେଲେ କାହିଁକି, କର୍ଣ୍ଣାଟେଶ୍ୱର ? ମହାରାଜ ! ଆପଣ ମଧ୍ୟ ଉତ୍ତର ଦିଅନ୍ତୁ ।

ସୁବର୍ଣ୍ଣ—ମୋର ଉତ୍ତର ?—ତୁ ଘରକୁ ଗୁଲିଯା ।

ନନ୍ଦକା—ଶୁଣନ୍ତୁ, କର୍ଣ୍ଣାଟେଶ୍ୱର ! ଶୁଣନ୍ତୁ ମହାରାଜ ! ନିତାନ୍ତ ଯେବେ ଯୁଦ୍ଧରେ ବ୍ୟକ୍ତିଗତ କଳହର ମୀମାଂସା କରିବାକୁ ଗୃହାନ୍ତି—ପାଶବିକ ଉପାୟରେ ନିଜର ପ୍ରାଧାନ୍ୟ ଦେଖାଇବାକୁ ଇଚ୍ଛା କରନ୍ତି, ତେବେ ଏହି ସାମାନ୍ୟ ଅନୁରୋଧ ରକ୍ଷା କରନ୍ତୁ—ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତୁ, ପରସ୍ପର ମଧ୍ୟରେ ବଳ କଷାକଷି ହୁଅନ୍ତୁ—ବୃଥାରେ, ନିଜର ସ୍ୱାର୍ଥ ସିଦ୍ଧିଲାଗି ଅପରର ସ୍ୱାର୍ଥ ନାଶ କରି, ଇହକାଳରେ କଳଙ୍କ ଅର୍ଜନ କରନ୍ତୁ ନାହିଁ—ପର କାଳରେ ମଧ୍ୟ ନରକ ଭୋଗ ବାସନା ରଖନ୍ତୁ ନାହିଁ ।

ଗୌର—ଠିକ୍ କହୁଛନ୍ତି, ଆର୍ଯ୍ୟେ !

ସୁବର୍ଣ୍ଣ—ଠିକ୍ କହୁଛୁ, ମା ! (ଉଭୟେ ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହେବା)

ନନ୍ଦିକା—ଅଉ ଅଳ୍ପ କ୍ଷଣକାଳପାଇଁ ଅପେକ୍ଷା କରନ୍ତୁ, ବୀରଗଣ ! ମୋତେ ଜାଣିବାକୁ ଦିଅନ୍ତୁ—ଏ'ପରି ଦ୍ୱନ୍ଦ୍ୱ ଯୁଦ୍ଧ କି ଧର୍ମନୀତି ଅନୁମୋଦିତ ? ଏକଅଡ଼େ ଜଣେ ବଳବାନ୍ ସବଳ ଯୁବକ, ଅନ୍ୟଅଡ଼େ ଜଣେ କଙ୍କାଳସାର ବୃଦ୍ଧ ।

ଗୌର—ବେଶ୍ ପିତାଙ୍କୁ ଆପଣଙ୍କର ତେବେ ପରାଜୟ ସ୍ୱୀକାର କରିବାକୁ ଅନୁରୋଧ କରନ୍ତୁ ।

ସୁବର୍ଣ୍ଣ—ସେନାପତେ ! ଜେମାଦେଈଙ୍କୁ ଘେନିଯାଅ—ଯୁଦ୍ଧକର, ସୈନ୍ୟଗଣ !

ଗୌର—ବେଶ୍ ଯୁଦ୍ଧକର ( ଉଭୟ ପକ୍ଷ ପରସ୍ପର ବନ୍ଧୁକେ ଅସ୍ତ୍ରୋତ୍ତୋଳନ କରିବା )

ନନ୍ଦକା—ନିତାନ୍ତ ଯେବେ ଯୁଦ୍ଧ କରିବେ, ବୀରଗଣ ! ତେବେ ଯୁଦ୍ଧର ଯେ ମୂଳ କାରଣ—ତା'ର ପରିଣାମ ଆଗେ ଏହାହିଁ ହେଉ [ ନନ୍ଦକା ମଧ୍ୟଭାଗକୁ ଚାଲିଯାଇ ଗୁପ୍ତ ଛୁରିକାଦ୍ୱାରା ବକ୍ଷସ୍ଥଳ ଭେଦ କରିବାକୁ ଉଦ୍ୟତ ହେବା ]

ସୁବର୍ଣ୍ଣ—ନନ୍ଦ ! ନନ୍ଦ !

କେଶର—ଅର୍ଜ୍ଜୁ ! ଅର୍ଜ୍ଜୁ !

( ଯବନିକା )

---

## ପ୍ରଥମ ଦୃଶ୍ୟ

[ ଦୁର୍ଗପ୍ରାଚୀର ]

ସୁବର୍ଣ୍ଣ—ଆଜକୁ ଏକପକ୍ଷ ଅତୀତ ହୋଇଗଲା, ତଥାପି ଶତ୍ରୁ ସୈନ୍ୟ-ପର ଦୁର୍ଗ ବେଷ୍ଟନ କରି ରହିଛନ୍ତି । ଥାଉ—କେତେଦିନ ସୈନ୍ୟ-ପର ବେଷ୍ଟନ କରି ରହିଥିବ—ମା ଜଗଦମ୍ବାଙ୍କ ପ୍ରଦତ୍ତ ଏହି ମଣିଟି ଯେତେଦିନ ମୋ ନିକଟରେ ଅଛି, ତେତେ ଦିନ ଏ ଦୁର୍ଗ ଅଭେଦ୍ୟ—ଜଗତରେ ଏପରି ଅସ୍ତ୍ର ଅସ୍ତ୍ର ନାହିଁ, ଏପରି ଶକ୍ତି ନାହିଁ—ଯଦ୍ୱାରା ଏ ଦୁର୍ଗର କଣିକାଏ କ୍ଷତିସାଧନ ହୋଇ ପାରେ । ମୋର ପ୍ରଧାନ ଭୟ ବର୍ତ୍ତମାନ, ଯଦି ଖାଦ୍ୟାଭାବ ଘଟେ —ମୁଁ ଯେପରି ଦେଖୁଛି, ଖୁବ୍ କଷାକଷିରେ ଆଉ ତିନି ଚାରିଦିନ ମାତ୍ର ଚଳିପାରେ—ତା' ପରେ କଣ କରିବି ? ସେନାପତି ସୁଡ଼ଙ୍ଗ ପଥରେ ଅଣାଇବାର ଚେଷ୍ଟା କରୁଛନ୍ତି—ମାତ୍ର ସେ ପଥରେ କେତେ ଆସି ପାରିବ ? ଯୋଗାଡ଼ ବା କାହୁଁ ଏତେ କରିବେ ? ଦୁର୍ଗ ଦ୍ୱାର କଦାପି ମୁଁ ଉନ୍ମୁକ୍ତ କରିବି ନାହିଁ—ମୋର ପ୍ରାଣର ଧନକୁ ଶତ୍ରୁକବଳରେ କଦାପି ଅର୍ପଣ କରି ପାରିବି ନାହିଁ । ଏ' ଜୀବନ ଯିବ ପଛକେ, ରାଜ୍ୟବାସୀ ସମସ୍ତେ ହା ଅନ୍ନ ହା ଅନ୍ନ ବୋଲି କ୍ଷୁଧାଜ୍ୱାଳାରେ ଦଗ୍ଧ ହୋଇ ମରିବେ ପଛକେ—

ନନ୍ଦଙ୍କୁ କଦାପି ଅନ୍ତରଙ୍କର ପାଇବ ନାହିଁ । ହାୟ ! ବାଳା ମୋର ସେ ଦିନ ଯେବେ ତାର ବାଲ୍ୟ ଚପଳତା ଯୋଗ୍ନ ଉପସ୍ଥିତ ହୋଇ ନ ଥାନ୍ତା, ସେହି ଦିନହିଁ ଯୁଦ୍ଧର ମୀମାଂସା ହୋଇ ଯାଇଥାନ୍ତା—ଶତ୍ରୁ ଏଠାରେ ଏ'ପରି ଭାବେ ଦୁର୍ଗ-ବେଷ୍ଟନ କରିବାକୁ ଦେଖି ନ ଥାନ୍ତି । ପରି ଯୁଦ୍ଧରେ ତର୍ଣ୍ଣାଙ୍କର ବିପୁଳ ବାହିନୀ ଅସି ପହଞ୍ଚିବାରୁ, ବାଧ୍ୟ ହୋଇ ପିତା ମୋତେ ଏହିପରି ଘୃଣ୍ୟ ଅଶ୍ରୟ ଗ୍ରହଣ କରିବାକୁ ହୋଇଛି ? (ନେପଥ୍ୟକୁ ଅନାଇ ) ଏହି ଗୈରଙ୍ଗଙ୍କ କେତେକ ସୈନ୍ୟମାନଙ୍କ ସଙ୍ଗେ କ ବାଷ୍ୟରେ କଥାବାର୍ତ୍ତା କରୁ କରୁ ଏଣେ ଅସୁଛନ୍ତି—ମୁଁ ଟିକିଏ ଗୋପନରେ ରହି ଶୁଣେ ।

( ସୁବର୍ଣ୍ଣ ଗୋପନରେ ଅବସ୍ଥାନ କରିବା )

( ଗ୍ଯୈରଙ୍ଗଙ୍କ ସସୈନ୍ୟେ ପ୍ରବେଶ କରିବା )

ଗ୍ଯୈର—ସୈନ୍ୟଗଣ ! ମୁଁ କାଲି ସ୍ୱପ୍ନ ଦେଖିଛି-ମା ଭାର୍ଗବୀ ଯେପରି ମୋତେ ବର ଦେଉଛନ୍ତି—ମୁଁ ନିଶ୍ଚୟ ଜୟଲାଭ କରିବି ! ଅଳ୍ପ କିଛିଦିନ ତୁମ୍ଭେମାନେ ଧୈର୍ଯ୍ୟ ଧର, ନଚେତ୍ ଏତେ କଷ୍ଟ ସବୁ ଅକାରଣ ହେବ ।

୧ମ-ସୈନ୍ୟ—ମହାରାଜ ! ଯେପରି ଦେଖା ଯାଉଛି ଅଜ ଏକଷଷ୍ଠ କ'ଣ ଅଜ ଏକ ମାସରେ ମଧ୍ୟ ଦୁର୍ଗ ଦଖଲ କରିବା ଅସମ୍ଭବ ।

ସୁବର୍ଣ୍ଣ—( ସ୍ୱଗତ ) ଈଶ୍ୱର ଜାଣନ୍ତି—ଏହି ଭାବହିଁ ଦୃଢ଼ ହେଉ !

ଗ୍ଯୈର—କଦାପି ନୁହେଁ, ସୈନ୍ୟଗଣ !—ଗୁପ୍ତଚର ଅଜ ସମ୍ବାଦ ଦେଇଛି, ଦୁର୍ଗ ମଧ୍ୟରେ ଖାଦ୍ୟ ସାମଗ୍ରୀ ଶେଷପ୍ରାୟ—ଖୁବ୍ ଜୋର ଦୁଇଦିନ ମାତ୍ର ଯାଇପାରେ ।

ସୁବର୍ଣ୍ଣ—( ସ୍ୱଗତ ) ଗୁପ୍ତଚର ଏ ସମ୍ବାଦ ପାଇଲା କିପରି ?

୧ମ-ସୈନ୍ୟ—ଆମ୍ଭେମାନେ ଯେ ଆଜକୁ ଦୁଇଦିନ ଉପବାସୀ ରହି ସାରିଲୁଣି, ମହାରାଜ ।

ସୁବର୍ଣ୍ଣ—( ସ୍ୱଗତ ) ଦୁଇଦିନ ଉପବାସୀ ?

ଗୈର—କିନ୍ତୁ ଚିନ୍ତାନାହିଁ, ମୁଁ ଖାଦ୍ୟ ସଂଗ୍ରହ ବିଷୟରେ ଯଥାସାଧ୍ୟ ଚେଷ୍ଟା କରୁଛୁ । ଆଜି ତୁମ୍ଭେମାନେ ନିଶ୍ଚୟ ପୂର୍ଣ୍ଣ ଭୋଜନ ପାଇବ ।

୨ୟ-ସୈ—କ୍ଷୁଧାଜ୍ୱାଳା ଶାନ୍ତ ହେଲେ, ଅନ୍ୟାନ୍ୟ ଜ୍ୱାଳା ସହ୍ୟ କରିବାକୁ ଅମ୍ଭେମାନେ ସାନନ୍ଦେ ସମ୍ମତ, ମହାରାଜ ।

ଗୈର—ଗୋଟିଏ ବିଷୟରେ କିନ୍ତୁ ତୁମ୍ଭମାନଙ୍କୁ ଖୁବ୍ ସାବଧାନ ହେବାକୁ ପଡ଼ିବ, ସୈନ୍ୟଗଣ !—ବାହାରରୁ ଯେପରି କୌଣସି ଖାଦ୍ୟ ସାମଗ୍ରୀ ଭିତରକୁ ନ ଯାଏ ।

୧ମ ସୈ—କିପରି ଯିବ, ମହାରାଜ । ଦୁର୍ଗ ଦ୍ୱାରିତ ବନ୍ଦ—ଛିଦ୍ରିରେ ଅମ୍ଭେମାନେ ସର୍ବଦା ସତର୍କ ରହୁଛୁଁ—ପିମ୍ପୁଡ଼ିର ପର୍ଯ୍ୟନ୍ତ ବିନାନଜରରେ ଯିବାର ସୁବିଧା ନାହିଁ କହିଲେ ଚଳେ ।

ଗୈର—ଗୁପ୍ତଚର କହୁଥିଲା ଗୋଟିଏ ସୁଡ଼ଙ୍ଗପଥ ଅଛି, କିନ୍ତୁ ଦୁର୍ଭାଗ୍ୟର ବିଷୟ, ଏ' ଏପର୍ଯ୍ୟନ୍ତ ତା'ର ଅନୁସନ୍ଧାନ ପାଇ ପାରି ନାହିଁ ।

ସୁବର୍ଣ୍ଣ—( ସ୍ୱଗତ ) ଏତେ ଖବର ପାଇସାରିଛନ୍ତି ? ସୁଡ଼ଙ୍ଗର ଦ୍ୱାର ପାଇଲେ ଯେ ଅମ୍ଭମାନଙ୍କର ନିଶ୍ୱାସ ପଥ ଏବା ବେଳେକେ ରୁଦ୍ଧ ହୋଇଯିବ—ମା ଚଣ୍ଡି । କୃପାକର, ମା ।

୧ମ ସୈ—ତେବେ ମହାରାଜ । ଅମ୍ଭମାନଙ୍କ ମଧ୍ୟରୁ କେତେ ଜଣଙ୍କୁ ଏହି ସୁଡ଼ଙ୍ଗ ପଥର ଅନୁସନ୍ଧାନ ଭାର ଦିଅନ୍ତୁ ।

ଶ୍ରେର—ସେନାପତିଙ୍କ ଉପରେ ମୁଁ ସେ ଭାର ଦେଇଅଛି । ସେ ବାହାର କର ଲୋକ ନିଯୁକ୍ତ କରିବେ-ତୁମ୍ଭେମାନେ ବର୍ତ୍ତମାନ ତୁମ୍ଭମାନଙ୍କର କର୍ତ୍ତବ୍ୟ ସ୍ଥାନକୁ ଯାଇପାର ।

ସୈନ୍ୟଗଣ—ଜୟ ମହାରାଜ ଶ୍ରେରଶାଙ୍କର ଜୟ । ମହାରାଜ ! ପ୍ରାର୍ଥନା, ଅମ୍ଭମାନଙ୍କୁ ଶୀଘ୍ର ଖାଦ୍ୟ ଯୋଗାନ୍ତୁ—ଏହି ଦେଖନ୍ତୁ ଅମ୍ଭମ ନଙ୍କର ଚାଲିବାର ଶକ୍ତି ସୁଦ୍ଧା ନାହିଁ ।

( କ୍ଳାନ୍ତ ଭାବେ ସୈନ୍ୟମାନଙ୍କର ପ୍ରସ୍ଥାନ )

ଶ୍ରେର—ବାସ୍ତବିକ୍ ଏମାନେ ଚଳତ୍ଶକ୍ତିହୀନ—ସେନାପତି ଖାଦ୍ୟର କି ଆୟୋଜନ କଲେ ?

ସୁବର୍ଣ୍ଣ— (ସ୍ୱଗତ) ମୋର ଗୁପ୍ତଚର କ'ଣ ଶୋଇଛି ? ଶତ୍ରୁମାନେ ତୁଇଦିନ ଉପବାସୀ, ଏ ସମ୍ବାଦ ମୁଁ ଅଗରୁ ଜାହିଁକି ନ ପାଇଲି । ଯାଏଁ ଏହିକ୍ଷଣି ଦୁର୍ଗଦ୍ୱାର ଖୋଲିଦିଏଁ—ଯୁଦ୍ଧ ଘୋଷଣା କରିଦିଏଁ । ସୁନ୍ଦର ସୁଯୋଗ ମିଳିଛି—କିନ୍ତୁ ଏହା କି ବୀରପକ୍ଷେ ଯୋଗ୍ୟାଚରଣ ହେବ ? ବର୍ତ୍ତମାନ ଯେ ସେମାନଙ୍କର ଜୀବନ ମରଣର ସମସ୍ୟା ? ହେଉ, ମୋର ନନ୍ଦିକାପାଇଁ ମୁଁ ନୀତି ଅନୀତି ମାନିବାକୁ ଚାହେଁନାହିଁ—ଯେ କୌଣସି ମତେ ଶତ୍ରୁ ନିବାରଣ କର୍ତ୍ତବ୍ୟ—ଏହିକ୍ଷଣି ଯିବି ? ନା-ଆଗେ ଜାଣିବା ଉଚିତ, ଯେବେ ସେମାନଙ୍କର ଖାଦ୍ୟର କୌଣସି ଆୟୋଜନ ହୋଇ ଯାଇଥାଏ ।

ଶ୍ରେର—ସହରରେ, ଗ୍ରାମରେ କେଉଁଠାରେ ତ କିଛି ମିଳୁନାହିଁ କର୍ଣ୍ଣାଟକୁ ମଧ୍ୟ ଲୋକ ପଠାଇଲି, ଜଣେ ସୁଦ୍ଧା ଫେରିଲା ନାହିଁ, କାହିଁକି ? ଆଜି ଯେବେ ସୈନ୍ୟମାନଙ୍କୁ ଖାଦ୍ୟ ଯୋଗାଇ ନ ପାରେଁ, ତେବେ ତ ଅନାହାରରେ ଅମ୍ଭମାନଙ୍କୁ ମରିବାକୁ ହେବ । ଉଃ । କି ଯାତନା । ଶତ୍ରୁକୁ ଅନଶନରେ

ରୁଦ୍ଧଶ୍ୱାସ କରି ମାରିବାକୁ ଯାଇ, ଆପଣାଙ୍କୁ କଣ ସେହିପରି ଭାବେ ମରିବାକୁ ହେବ ? ଉଃ ! କି ବେଦନା !

ସୁବର୍ଣ୍ଣ—(ସ୍ୱଗତ) ଈଶ୍ୱରଙ୍କୁ ଧନ୍ୟବାଦ ଦେଉ, ଯେବେ ଗୈରବ ଶାସ୍ତି ଗୈରବ ଏହିପରି ଭାବେ ନିଜ ହସ୍ତରେ ଲଭନ୍ତରେ ।

( ସେନାପତିର ପ୍ରବେଶ )

ସେନାପତି—ମହାରାଜ ! ମହାରାଜ ! ସର୍ବନାଶ !

ଗୈରବ—କି ସର୍ବନାଶ ?

ସେନା—ବାସୁଦେବ ମନ୍ତ୍ରୀ କର୍ଣ୍ଣାଟରୁ ବହୁ ଖାଦ୍ୟ ଶକଟ ନେଇ ଆସୁଥିଲେ—ଦୁର୍ଗର ଉତ୍ତର ଜଙ୍ଗଲରେ ସମସ୍ତ ଶକଟ ଲୁଟ ହୋଇ ଯାଇଛି ।

ସୁବର୍ଣ୍ଣ—ବାସୁଦେବ ମନ୍ତ୍ରୀ ?

ଗୈରବ—ଲୁଟ ହୋଇଗଲା ! ଦିନବେଳେ ?

ସେନା—ଠିକ୍ ପ୍ରଭାତ ପୂର୍ବରୁ ।

ଗୈରବ—ତାହାଁ ବାସୁଦେବ ?

ସେନା—ଅନୁସନ୍ଧାନରେ ଲାଗିଛନ୍ତି ।

ଗୈରବ—ଆମ୍ଭେମାନେ ଏପର୍ଯ୍ୟନ୍ତ ଖବର ପାଇ ନଥିଲୁ ତାହାଁକି ?

ସେନା—ଅତି ପ୍ରତ୍ୟୁଷରୁ ମୁଁ ଯେତେବେଳେ ଆପଣଙ୍କ ଠାରୁ ବିଦାୟ ନେଇ ଖାଦ୍ୟ ସଂଗ୍ରହ ନିମନ୍ତେ ବାହାରେ, କିଛି ଦୂର ଯିବାପରେ ତାଙ୍କୁ ଶିବିର ଆଡ଼କୁ ଦୁଃଖିତ ଅନ୍ତରରେ ଆସିବାର ଦେଖେ—ସେ ମୋ ନିକଟରେ ସମସ୍ତ ବର୍ଣ୍ଣନା କରିବାରୁ କତିପୟ ସୈନ୍ୟ ନେଇ ଆମ୍ଭେ ଦୁଇଜଣ ଶତ୍ରୁର ଅନ୍ୱେଷଣରେ ପ୍ରବୃତ୍ତ ହେଲୁଁ । କୌଣସି ସନ୍ଧାନ ନ ପାଇ ମୁଁ ବର୍ତ୍ତମାନ ଫେରି ଆସୁଛି ।

ଗୈର—ସେନାପତେ ! ମୋର ସ୍ଥିର ସନ୍ଦେହ ହେଉଛି, ଏଥିରେ ନିଶ୍ଚୟ ବାସୁଦେବର ଷଡ଼ଯନ୍ତ୍ର ଅଛି—କାହିଁ ସେ ନରାଧମ ?

ସୁବର୍ଣ୍ଣ—(ସ୍ୱଗତ) ନରାଧମ ଶବ୍ଦଗୁଡ଼ିକ ଯୋଗ ଦେଉଛି !—କିନ୍ତୁ ଈଶ୍ୱର ଉପଯୁକ୍ତ ଶାସ୍ତିର ବିଧାନ କରି ଦେଲେଣି ।

ଗୈର—କୁହ, ସେନାପତେ ! କାହିଁ ସେ ନରାଧମ ?

ସେନା—ସେ ବର୍ତ୍ତମାନ ସୁଦ୍ଧା ଅନ୍ୱେଷଣରେ ବ୍ୟାପୃତ—ରାଣୀମାଙ୍କ ଠାରୁ ଗୋଟିଏ ପତ୍ର ଆସିଥିଲେ, ତାହା ମୋ ହାତରେ ଆପଣଙ୍କ ନିକଟକୁ ପଠାଇ ଦେଇଛନ୍ତି ।

ଗୈର—(ପତ୍ରଦେଖି) ମା ନିଶ୍ଚୟ ମୋ' ଉପରେ ଅକୃତଜ୍ଞତାର ନିମନ୍ତେ ବିରକ୍ତ ହୋଇଥିବେ—ହାୟ ! ଏ' ପର୍ଯ୍ୟନ୍ତ ମୁଁ ମାତୃବାଞ୍ଛା ପୂର୍ଣ୍ଣ କରି ପାରିଲି ନାହିଁ ? ସେନାପତେ ! ଏ'ପତ୍ର ମୁଁ ପାଠକରି ପାରିବି ନାହିଁ, ତୁମ୍ଭେ ଏହା ପାଠକରି କେବଳ ଏହାର ସାରମର୍ମ୍ମ ମୋତେ ଶୁଣାଅ ।

( ପତ୍ରଦାନ ଓ ସେନାପତି ମନେ ମନେ ପଢ଼ିବା )

ଉଃ ! କି ମର୍ମାନ୍ତିକ ଯନ୍ତ୍ରଣା ଅନୁଭବ କରୁଛି ! ବାସୁଦେବ ନିଶ୍ଚୟ ଗୋଟାଏ ଭୀଷଣ ଷଡ଼ଯନ୍ତ୍ର କରିଛି—ଏହି ଯେ ନରାଧମ ଏଣେ ଆସୁଛି ! ( ବାସୁଦେବର ପ୍ରବେଶ )

ବିଶ୍ୱାସ ଘାତକ ! ( ଗୈରଙ୍କ ମୁଖ ଫେରାଇ ଛିଡ଼ାହେବା )

ବାସୁଦେବ—ମହାରାଜ ! ଅଧମକୁ କ୍ଷମା କରନ୍ତୁ—ଈଶ୍ୱରଙ୍କୁ ସାକ୍ଷୀକରି କହୁଛି—ଶ୍ରୀଚରଣସ୍ପର୍ଶକରି କହୁଛି, ଅଧମ କଦାପି ବିଶ୍ୱାସ ଘାତକ ନୁହେଁ ।

ସୁବର୍ଣ୍ଣ—ନିଶ୍ଚୟ ବିଶ୍ୱାସଘାତକ ! (ସ୍ୱଗତ) ଏହି ସେହି ବିଶ୍ୱାସ-ଘାତକ ତାର'ର ଦର୍ଶନ ମାତ୍ରକେ ମୋର କ୍ରୋଧ ବହ୍ନିଶତ ଶିଖା ଧାରଣ କରୁଛି ।

ଶେର—( ଗୁରଅଡ଼େ ଗୁହିଁ ) ନିଷ୍ଠୁର ଏ' ଦୈବବାଣୀ—ଏ'କ'ଣ ସେନାପତେ ! ତୁମ୍ଭର ମୁଖ ବିବର୍ଣ୍ଣ ହୋଇଗଲା କାହିଁକି ? ପତ୍ରରେ କ'ଣ ଲେଖା ଅଛି କି ?

ସେନା—ପତ୍ରରେ ଆପଣଙ୍କୁ ଫେରିଯିବା ନିମନ୍ତେ ଲେଖା ଅଛି ।

ଶେର—ଫେରିଯିବାକୁ ? ମା ନିଷ୍ଠୁର ମୋତେ କାପୁରୁଷ ଓ ଦୁର୍ବଳ ଜ୍ଞାନ କରି ସାରିଲେଣି ।

ସେନା—ନା; ମହାରାଜ ! ସେ ଲେଖିଛନ୍ତି—ମୁଁ ପ୍ରଥମେ କ୍ରୋଧ ବଶତଃ ତୋତେ ଯୁଦ୍ଧରେ ପ୍ରବୃତ୍ତ ହେବାକୁ ଆଦେଶ ଦେଇଥିଲି; ମାତ୍ର ବର୍ତ୍ତମାନ ଭାବି ଦେଖୁଛି, ଯୁଦ୍ଧ ଦ୍ୱାରା ଏ'ପରି ସାଧୁ ଉଦ୍ଦେଶ୍ୟ ସାଧିତ କରିବା ନିତାନ୍ତ ଅନ୍ୟାୟ— ମୁଁ ଆଜି ଠାରେ ଓଡ଼ିଶାରାଜାଙ୍କ ନିକଟ ଦୂତ ପଠାଇବି, ନଚେତ ନିଜେ ଯାଇ—

ଶେର—ଥାଉ ଥାଉ, ଶୁଣିବାର ଆଉ ପ୍ରୟୋଜନ ନାହିଁ—ଏହା ନିଷ୍ଠୁର ଏହି ନରାଧମର କୌଶଳ'।

ସୁବର୍ଣ୍ଣ—ନିଷ୍ଠୁର କୌଶଳ ।

ଶେର—(ଗୁରଅଡ଼େ ଗୁହିଁ) କି ଏ ପ୍ରତ୍ୟୁତ୍ତର ଦେଉଛ ? ଏହା ନିଷ୍ଠୁର ଦୈବବାଣୀ ।

ବାସୁ—ମହାରାଜ !

ଶେର—ଚୁପ୍ କର ନରାଧମ !

ସେନା—ଆହୁରି ମଧ୍ୟ ଲେଖିଅଛନ୍ତି,"ବାସୁଦେବ ମନ୍ତ୍ରୀ ଭାରି ସଜ୍ଜନ— ତାଙ୍କର ଉଦ୍ଦେଶ୍ୟ ଅତି ମହତ୍—ତା'ଙ୍କୁ କଦାପି ଅବମାନନା କରିବୁ ନାହିଁ—ତା'ଙ୍କର ପରାମର୍ଶ ନେଇ ସର୍ବଦା କାର୍ଯ୍ୟ କରିବୁ—ଏହା ମାତୃ-ଆଦେଶ" ।

ଗୌର—ଏ'ମାତୃ-ଆଦେଶ ନୁହେଁ ସେନାପତେ ! ଏ ବିଶ୍ୱାସଘାତକର ଛଳନା ! ବୀରମାତା କେବେ ପୁତ୍ରକୁ ତା'ର ଫେରି ଯିବାକୁ ଆଦେଶ ଦିଏ ନାହିଁ—ବୀରପୁତ୍ର ଜୟୋତ୍ଫୁଲ୍ଲ ବଦନରେ ମାତୃଦର୍ଶନ କରେ, ନଚେତ୍ ଚିରଦିନ ପାଇଁ ସେ ସୁଖରୁ ବଞ୍ଚିତ ହୁଏ । ମା ! ମା ! କି କୁକ୍ଷଣରେ ବିଶ୍ୱାସ ଘାତକକୁ ଆଶ୍ରୟ ଦେଇଥିଲ, ମା ?

ବାସୁ—ମହାରାଜ ! ଥରେ ବିଚାର କର—

ଗୌର—ଚୁପ୍ କର, ନରାଧମ !—ସେନାପତେ ! ଏହି ବିଶ୍ୱାସ-ଘାତକକୁ ବନ୍ଦୀକର ଯୁଦ୍ଧ ଶେଷ ପର୍ଯ୍ୟନ୍ତ ସତର୍କ ପ୍ରହରୀ ଦ୍ୱାରା ରକ୍ଷାକର—ଯୁଦ୍ଧ ଶେଷରେ ତା'ର ବିଚାର ହେବ ।

ବାସୁ—(ସ୍ୱଗତ) ଦୀନବନ୍ଧୁ ! ସଂସାରରେ ଜଣେ ସାଧୁ ଉଦ୍ଦେଶ୍ୟ ନେଇ କାର୍ଯ୍ୟ କରିବାକୁ ଗଲେ, ତା'ର କ'ଣ ପଦେ ପଦେ ଏହିପରି ବିପଦ ଘଟିଥାଏ ? ଯାହା ଇଚ୍ଛା, ଶାସ୍ତି ଦିଅ ପ୍ରଭୋ ! ଏ ଜୀବନ ଥିବା ପର୍ଯ୍ୟନ୍ତ କର୍ତ୍ତବ୍ୟ ପାଳନରେ ଯେପରି ତ୍ରୁଟି ନ ଘଟାଅ ।

ସେନା—ଚାଲନ୍ତୁ, ମନ୍ତ୍ରୀ ମହାଶୟ ।

ଗୌର—ବନ୍ଦୀକରି ନେଇଯାଅ ।

ବାସୁ—ପଳାଇବାର ଆଶଙ୍କା କରୁଛନ୍ତି ? ଆଶ୍ରୟଦାତାଙ୍କର ଆଦେଶ ଏ' ଅଧୀନ ଅକ୍ଷରେ ଅକ୍ଷରେ ପାଳନ କରିବ, ମହାରାଜ ! ତେବେ ଯିବା ପୂର୍ବେ ଏତିକି ମାତ୍ର ପ୍ରାର୍ଥନା, ମହାରାଜ ! ଅଧମ ପ୍ରତି ଥରେ ସୁବିଚାର କରନ୍ତୁ—ବିଶ୍ୱାସ ଘାତକ ବୋଲି ପଦାଘାତ କରନ୍ତୁ ନାହିଁ ।

ଗୌର—ଚାଲିଯା ସମ୍ମୁଖରୁ ନରାଧମ ! ସେନାପତେ ! ଶୀଘ୍ର ନେଇଯାଅ !

( ସେନାପତି ଓ ବାସୁଦେବର ପ୍ରସ୍ଥାନ )

ସୁବର୍ଣ୍ଣ—ଉପଯୁକ୍ତ ଶାସ୍ତି ହୋଇ'ଛୁ—ଠିକ୍ ଦଣ୍ଡ ଦେଇ'ଛ, ଗୈରଗଙ୍ଗ ।

ଗୈର—କାଏ କହୁ'ଛୁ ?—ଏହି ଯେ ସୁବର୍ଣ୍ଣକେଶରୀ । ଓଡ଼ିଶାର ରଜା । ମହାରାଜ । ଏହି କି ଆପଣଙ୍କର ବୀରତ୍ୱ ?—ଏହି କି ଆପଣଙ୍କର ରଣକୌଶଳ ?—ଗୈର ଉତ୍କଳଙ୍କ ପରି ପ୍ରାଣରକ୍ଷା ଭୟରେ ଆତ୍ମଗୋପନ କରିବା—ଶୃଗାଳ ପରି ସିଂହ ଭୟରେ ଗର୍ତ୍ତ ମଧ୍ୟରେ ଲୁଚି ରହିବା ?

ସୁବର୍ଣ୍ଣ—ଗୈର । ଯେଉଁ ଗୁଣରେ ତୋର ନାମ ସାର୍ଥକ କରୁଛୁ, ସେହି ଗୁଣରେ ଅପରକୁ ଭୂଷିତ କରିବାକୁ ଏତେ ଆଗ୍ରହ କାହିଁକି ? ଭୁଲି କି ଗଲୁ ସେହିଦିନ, ଗୈର । ଯେଉଁ ଦିନ କାଠଯୋଡ଼ିବନ୍ଧ ଲଙ୍ଘନ କରି ଲୁଚି ଲୁଚି ସହର ମଧ୍ୟରେ ପ୍ରବେଶ କରିଥିଲୁ—ଉତ୍କଳ ଭଳି ବିପୁଳ ସୈନ୍ୟ ଘେନି ସ୍ୱଳ୍ପ ସୈନ୍ୟକୁ ମୋର ଧ୍ୱଂସ କରିବାକୁ ଆସିଥିଲୁ ?

ଗୈର—କର୍ଣ୍ଣାଟବୀର କଦାପି ଅନ୍ୟାୟ ଯୁଦ୍ଧ ଜାଣେନାହିଁ, ଓଡ଼ିଶାରାଜ । ସେ ଦିନ କାଠଯୋଡ଼ିବନ୍ଧ ଲଙ୍ଘନ କରିଥିଲି, କେବଳ ସମର କ୍ଷେତ୍ରରେ—ସମଭାବରେ ଉଭୟ ପକ୍ଷର ସମାବେଶ ନିମନ୍ତେ । ସ୍ୱଳ୍ପ ସୈନ୍ୟକୁ ଧ୍ୱଂସ ?—ଧ୍ୱଂସତ ନୁହେଁ—କେବଳ ବନ୍ଦୀ କରିବାକୁ ଉଦ୍ୟତ ହୋଇଥିଲି—ବାଧ୍ୟ ହୋଇ, ଯେତେବେଳେ ଆତ୍ମ ସମର୍ପଣ କରିବାକୁ ଅନିଚ୍ଛୁକ ହେଲେ ।

ସୁବର୍ଣ୍ଣ—ଆତ୍ମସମର୍ପଣ ? ବୀରଠାରୁ ଏହା ଆଶା କରିଥିଲ—ସିଂହଠାରୁ ଏହା କାମନା କରିଥିଲ ? ତୁମର ଯଦି ବନ୍ଧ ଲଙ୍ଘନ କରିବା କୌଶଳ ହୁଏ—ମୋର ସ୍ୱଳ୍ପ-ସୈନ୍ୟ ହେତୁ ବିପୁଳ-ସୈନ୍ୟ

ବାହୁବଳରେ ଦୁର୍ଗାଭ୍ୟନ୍ତ ଗ୍ରହଣ କରିବା କ'ଣ କୌଶଳ ନୁହେଁ ?
ତୁମ୍ଭେ ଯଦି ପାର, ଦୁର୍ଗ ଭେଦକରି ପ୍ରବେଶ କର ।

ଶ୍ରୀହର—ଏତେ କୌଶଳର କି ପ୍ରୟୋଜନ ମହାରାଜ । ଆପଣ କ'ଣ ଭାବନ୍ତି ଯେ ଅନତିବିଳମ୍ବେ ଅମ୍ଭମାନଙ୍କୁ ଆମନ୍ତ୍ରଣ କରି ଭିତରକୁ ନେଇଯିବେ ?

ସୁବର୍ଣ୍ଣ—ଅନ୍ୟ କାହାକୁ ଏ' ମୌଖିକ ସାହସ ଦେଖାଇଥିଲେ ହାଇନ୍ତା—କାରଣ, ତୁମ୍ଭମାନଙ୍କର ପ୍ରକୃତ ଅବସ୍ଥା ବର୍ତ୍ତମାନ ମୋତେ ବେଶ ଜଣା ।

ଶ୍ରୀହର—ହାଃ, ହାଃ, ହାଃ । ମନେ କରିଛନ୍ତି କି ଖାଦ୍ୟ ଶଙ୍କଟ ଲକ୍ଷ ହୋଇଛୁ ବୋଲି, ଅମ୍ଭେମାନେ ଅଚିରେ ଦୁର୍ଗାବରୋଧ ତ୍ୟାଗ କରି ଚାଲି ଯିବୁଁ ?—କଦାପି ନୁହେଁ—ମୃତ୍ୟୁ ବରଂ ଶ୍ରେୟସ୍କର, ପରାଜୟ କଳଙ୍କ ନେଇ ଶ୍ରୀହରଙ୍କ କଦାପି କର୍ଣ୍ଣାଟ ପ୍ରତ୍ୟାବର୍ତ୍ତନ କରିବ ନାହିଁ ।

ସୁବର୍ଣ୍ଣ—ତେବେ ମନେ କରିଛ ପରା, ଦୁର୍ଗ ମଧ୍ୟରେ ଖାଦ୍ୟ ସାମଗ୍ରୀ ଶେଷ ପ୍ରାୟ ବୋଲି, ଅମ୍ଭେମାନେ କ୍ଷୁଧାଜ୍ୱାଳାରେ କାତର-ହୋଇ ଦୁର୍ଗଦ୍ୱାର ଖୋଲି ଦେବୁଁ—ଆତ୍ମସମର୍ପଣ କରିବୁଁ ? ବୃଥାଆଶା । ଅନଶନରେ ମରିବୁ ବରଂ, ଶତ୍ରୁକୁ ଦୁର୍ଗାର୍ପଣ ଅସମ୍ଭବ !

ଶ୍ରୀହର—ଦେଖା ଯାଉ, କା'ର କେତେ ଶକ୍ତି । ଜୟ ଗଙ୍ଗାମାଈଙ୍କ ଜୟ ।

ସୁବର୍ଣ୍ଣ—ଜୟ ମା ଚଣ୍ଡୀ କି ଜୟ ।

( ଉଭୟଙ୍କର ବିପରୀତ ଦିଗରେ ପ୍ରସ୍ଥାନ )

———

## ଦ୍ୱିତୀୟ ଦୃଶ୍ୟ

( ଉଦ୍ୟାନ )

ନନ୍ଦିକା—ଏହି ଯୁଦ୍ଧ-ପ୍ରବୃତ୍ତି, ମନୁଷ୍ୟର ଏହି ହିଂସାଭାବ, କି ସ୍ୱାଭାବିକ—? କି ଯୁବା, କି ବୃଦ୍ଧ, କି ଜ୍ଞାନୀ, କି ମୂର୍ଖ ସମସ୍ତେ—ଦେଖୁଛି ଏଥିରେ ସମାନ ସୁଖ ଅନୁଭବ କରୁଛନ୍ତି, ସମାନ ଗର୍ବ ପ୍ରକାଶ କରୁଛନ୍ତି ? ଯୁଦ୍ଧରେ ମନୁଷ୍ୟର ସାହସ ଓ ବୀରତ୍ୱର ପରିଚୟ ମିଳେ—କିନ୍ତୁ କେଉଁର ବୀରତ୍ୱ ଓ ସାହସ ସେ ?—ଯେପରି ବୀରତ୍ୱ ଓ ସାହସ, ବନ୍ୟ ପଶୁ, ବିଦାରଣକ୍ଷମ ନଖର ଦଂଶନ ତୁଳନାରେ ପ୍ରଦର୍ଶନ କରେ—ଯେପରି ସାହସ ଓ ବିକ୍ରମ, ସଯତାନ ପରିବନ୍ଧତା ସୌନ୍ଦର୍ଯ୍ୟ ବିନାଶ ସାଧନରେ ପ୍ରକାଶ କରେ ! ଏହି ସଯତାନ ପ୍ରବୃତ୍ତିକୁ ନେଇ, ମନୁଷ୍ୟ କିପରି ନିଜକୁ ଜ୍ଞାନୀଶ୍ରେଷ୍ଠ ବୋଲି ପରିଚୟ ଦେଉଛି ? ଏହି ପାଶବିକ ଭାବ ନେଇ, କିପରି ନିଜକୁ ଜୀବଶ୍ରେଷ୍ଠବୋଲି ପ୍ରଶଂସା କରୁଛି ?

( ଦୁଇଜଣ ସୈନିକଙ୍କର ପ୍ରବେଶ )

୧ମ-ସୈନ୍ୟ—( ଖାଦ୍ୟ ଦେଖାଇ ) ମା ! ଦେଖନ୍ତୁ, ଅମ୍ଭମାନଙ୍କର ଖାଦ୍ୟ ପରିମାଣ ଦିନୁ ଦିନ ଯେପରି ହ୍ରାସ ହେବାକୁ ଲାଗିଲାଣି ସେଥିରେ ନିଶ୍ଚୟ ଅମ୍ଭମାନଙ୍କୁ ଦିନେ ଦୁଇଦିନ ମଧ୍ୟରେ ଉପବାସରେ ମରିବାକୁ ହେବ !

୨ୟ-ସୈ—ମା ! ଆପଣ ରାଜାଙ୍କୁ ଏ'କଥା ଥରେ ଭଲକରି ବୁଝାଇ ଦିଅନ୍ତୁ !

୨ୟ-ସୈ—ଆପଣ ଏ’ ଦୀନମାନଙ୍କର ଏକମାତ୍ର ଭରସା—ଆପଣଙ୍କ ହେତୁ ଅମ୍ଭେମାନେ ଅନେକ କ୍ଲେଶ ଓ ବିପଦରୁ ରକ୍ଷା ପାଉଛୁ ମା !

ନନ୍ଦକା—ଚାହିଁ ତୁମ୍ଭମାନଙ୍କୁ ରକ୍ଷା କରୁଛି, ସୈନ୍ୟଗଣ ? ମୋର କି ସେ ଶକ୍ତି ଅଛି ?—ଯେବେ ଥା’ନ୍ତା, ଆଜି କ’ଣ ତୁମ୍ଭେମାନେ ଏହି ଅନ୍ଧକୂପ ସମ ଦୁର୍ଗ ମଧ୍ୟରେ ଅବଦ୍ଧ ରହି ଶ୍ୱାସରୁଦ୍ଧ ହେଉ ଥା’ନ୍ତ—ଆଉ ବାହାରେ ତୁମ୍ଭମାନଙ୍କର ଭାଇମାନେ ଏ ଦୃଶ୍ୟ ଦର୍ଶନ କରି ଆନନ୍ଦ ଅନୁଭବ କରୁଥାନ୍ତେ ? —ମୋର ଯେବେ ତିଳେ ମାତ୍ର ସାମର୍ଥ୍ୟ ଥାନ୍ତା, ଆଜି କ’ଣ ତୁମ୍ଭେମାନେ ‘ହା ଅନ୍ନ’ ‘ହା ଅନ୍ନ’ ବୋଲି ଚିତ୍କାର କରି ଅର୍ଦ୍ଧ ମୃତପ୍ରାୟ ହୋଇଥା’ନ୍ତ,—ଆଉ ବାହାରେ ତୁମ୍ଭମାନଙ୍କର ଭାଇମାନେ ସେ କ୍ରନ୍ଦନ ଶ୍ରବଣ କରି ଆନନ୍ଦରେ ନୃତ୍ୟକରି ବୁଲୁଥାନ୍ତେ ? ଏହି ପ୍ରାଚୀରକୁ ଅନାଅ, ସୈନ୍ୟଗଣ ! ଏହାର ପ୍ରତ୍ୟେକ ପ୍ରସ୍ତର ଖଣ୍ଡ: ନିର୍ଜୀବ କଠିନ ହେଲେମଧ୍ୟ, ତୁମ୍ଭମାନଙ୍କର ଶୋକ ଧ୍ୱନିର ପ୍ରତିଧ୍ୱନି କରୁଛି—ତୁମ୍ଭମାନଙ୍କର ଦୁଦ୍ଦଶା ଦର୍ଶନରେ ନିଶ୍ଚଳ ନିଷ୍ପନ୍ଦ ହୋଇ ଯାଉଛି—କିନ୍ତୁ ମନୁଷ୍ୟ ସଜୀବ, କୋମଳ-ହୃଦୟ ହୋଇ ଆଜି କରୁଛି କ’ଣ ?—ସ୍ୱଜାତିର, ନିଜର ଭାଇର ଦୁର୍ଦ୍ଦଶା ଦେଖି, ଆନନ୍ଦରେ ପାଗଳପ୍ରାୟ ହେଉଛି! କାତର ପୂର୍ଣ୍ଣ ଚିତ୍କାରକୁ ସଙ୍ଗୀତ ସମ ସ୍ୱକର୍ଣ୍ଣରେ ଗ୍ରହଣ କରି, ମର୍ମରେ ଯେଉଁ ଶାନ୍ତି ଉପଭୋଗ କରୁଛି ? ହେ ସୈନ୍ୟଗଣେ ! ଈଶ୍ୱରଙ୍କୁ ଡାକ— ତାଙ୍କ ବିନା ଏ ସଂସାରରେ ଅନ୍ୟ କେହି ନାହାନ୍ତି; ଯେ ଏହି ମହାମାରୀ ଯୁଦ୍ଧ ନିବାରଣ କରି ପାରିବେ—ମନୁଷ୍ୟ ହୃଦୟରୁ ଏହି ପାଶବିକତା ଓ ସୟତାନଭାବ ବହୂରିତ କରି

ପାର୍ବତୀ—(ଅଶ୍ରୁ ମାର୍ଜ୍ଜି ବସି) 'ହେ ଜଗଦୀଶ । ମନୁଷ୍ୟକୁ ବିବେକ ଦେଇଛନ୍ତି– ବୁଦ୍ଧି ଦେଇଛନ୍ତି—ହୃଦୟ ଦେଇଛନ୍ତି, ଶକ୍ତି ଦେଇ ନାହାନ୍ତି କାହିଁକି ? ସେହି ଶକ୍ତି ଅଭାବରୁ ଦେଖନ୍ତୁ, ଈଶ୍ୱର ସୃଷ୍ଟିର ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟ, ଏହି ମହାନୁଭବ ଜୀବଶ୍ରେଷ୍ଠ—ମନୁଷ୍ୟ ଉପରେ ହେୟ, ନୀଚ ପଶୁତୁଲ୍ୟ ଆଚରଣ କରୁଛନ୍ତି ଉପରେ ଜଘନ କ୍ରୂର ପିଶାଚ ତୁଲ୍ୟ କାର୍ଯ୍ୟ କରୁଛନ୍ତି । କୃପା କରନ୍ତୁ, ଦୀନବନ୍ଧୁ । ମନୁଷ୍ୟକୁ ଶକ୍ତି ଦାନ କରନ୍ତୁ— ମନୁଷ୍ୟକୁ ମନୁଷ୍ୟ କରନ୍ତୁ' ( ପ୍ରଣାମ କରିବା ) ।

ସମସ୍ତେ—( ପ୍ରଣାମ କରି ) ଜୟ ଜଗତପତି ଜଗନ୍ନାଥଙ୍କର ଜୟ ।

( ଗୁପ୍ତଚରର ବେଗେ ପ୍ରବେଶ )

ଗୁପ୍ତଚର—ଭୟନାହିଁ, ସୈନ୍ୟଗଣ । ଈଶ୍ୱର ଅନୁଗ୍ରହ କରିଛନ୍ତି ।

୧ମ-ସୈ—କହ ଚର । କି ଅନୁଗ୍ରହ କରିଛନ୍ତି ?

ଗୁପ୍ତଚର—ପ୍ରଚୁର ଖାଦ୍ୟ ସଂଗୃହୀତ ହୋଇଛି ।

ନନ୍ଦକା—ଧନ୍ୟ ଈଶ୍ୱର ।

ସୈନ୍ୟଗଣ—ଜୟ ଜଗନ୍ନାଥଙ୍କର ଜୟ—ମା, ମା ! ଆପଣଙ୍କର ପ୍ରାର୍ଥନା ବଳରେ ଆମ୍ଭମାନଙ୍କର ମନସ୍କାମନା ପୂର୍ଣ୍ଣ ହୋଇଛି ।

ନନ୍ଦକା—କରୁଣାମୟଙ୍କର ଇଚ୍ଛାରେ ସବୁ ହୋଇପାରେ—ତାଙ୍କୁ ଧନ୍ୟବାଦ ଦିଅ ।

ସୈନ୍ୟଗଣ—ଜୟ କରୁଣା ସାଗର ଜଗନ୍ନାଥଙ୍କର ଜୟ ।

( ସୈନ୍ୟମାନଙ୍କର ପ୍ରସ୍ଥାନ )

ଗୁପ୍ତଚର—ମା । ଏଥର ଆମ୍ଭମାନଙ୍କର ଜୟ ସୁନିଶ୍ଚିତ ।

ନନ୍ଦକା—ଯେତେ ଖାଦ୍ୟ ସଂଗ୍ରହ ହୋଇଛି, ସେଥିରେ କେତେଦିନ ଯାଇପାରେ ?

ଗୁପ୍ତଚର—ଏକ ପକ୍ଷରୁ କଦାପି କମ୍ ନୁହେ ।

ନନ୍ଦକା—ବେଶ୍, ତା'ପରେ କି ବନ୍ଦୋବସ୍ତ ହୋଇଛି ? ତଥାପି ଯେବେ ଶତ୍ରୁ ବେଷ୍ଟନ କରି ରହେ ?

ଗୁପ୍ତଚର—ଅସମ୍ଭବ । ସେମାନଙ୍କର ସମସ୍ତ ଖାଦ୍ୟ ସାମଗ୍ରୀ ଯେ ଅମ୍ଭମାନଙ୍କର ହସ୍ତଗତ ?

ନନ୍ଦକା—ତେବେ ଏ' ସଂଗୃହୀତ ଖାଦ୍ୟ ସାମଗ୍ରୀ ଲଣ୍ଠି ଶତ୍ରୁର ?

ଗୁପ୍ତଚର—ଅଜ୍ଞା, ଜେମାଦେଇ ।

ନନ୍ଦକା—ତା'ହେଲେ'ଚୋର' ନକହି 'ସଂଗୃହୀତ' କହୁଛ କାହିଁକି ?

ଗୁପ୍ତଚର—ମା, ଏ' କ'ଣ ଏକ ପ୍ରକାର କୌଶଳ ନୁହେଁ ?

ନନ୍ଦକା—କୌଶଳ ?—ଅଜ୍ଞାତସାରେ ଅପରର ଧନ ହରଣ କରି ନେବା କୌଶଳ ? ନିର୍ଦ୍ଦୟଭାବରେ କ୍ଷୁଧାର୍ତ୍ତଠାରୁ ଖାଦ୍ୟ କାଢ଼ି ନେବା, କୌଶଳ ? ପଶୁଭାବରେ ଅପରର ସ୍ୱାର୍ଥ ନାଶ କରି ନିଜର ସ୍ୱାର୍ଥସିଦ୍ଧି କରିବା, କୌଶଳ ?—ହା ମାନବ । ହାୟ ତୁମ୍ଭର ସମାଜ ।

ଗୁପ୍ତଚର—ଅଜ ମୁଁ ଠିଆ ହୋଇ ପାରୁ ନାହିଁ, ଜେମାଦେଇ !

ନନ୍ଦକା—ଅବଶ୍ୟକ ମଧ୍ୟ ନାହିଁ—ହା ମାନବ ।

( ନେପଥ୍ୟେ ଶାରଦାର ଗୀତ )

—ଗୀତ—

ସାଧେ କି ମୁଁ ହୋଇଛି ଗୋ ପାଷାଣୀ ?

( ଗୁପ୍ତଚରର ପ୍ରସ୍ଥାନ )

ନନ୍ଦକା—ଏହି ଜଣେ ଅଛନ୍ତି—ପ୍ରକୃତରେ ଯେ କୋମଳାଙ୍ଗୀ, ପ୍ରକୃତରେ ଯେ କୋମଳହୃଦୟା—ଜିଘାଂସା ପ୍ରବୃତ୍ତି ହେତୁ, ଅଜି ସେ କେତେ ଦୂର କଠିନପ୍ରାଣା—କେତେ ଦୂର କଠିନ ହୃଦୟା । ( ଶାରଦାର ଗୀତ ଗାଇ ଗାଇ ପ୍ରବେଶ )

—ଗୀତ—

ସାଧେ କି ମୁ ହୋଇଛୁ ଗୋ ପାଷାଣୀ ?
ସବୁ ସୁଖ ସବୁ ଆଶା, ଦେଇଛୁ ଯେ ହାଣି ।
ଏ' ହୃଦୟ ଉର୍ବର କ୍ଷେତ୍ର, ସୁଶୋଭିତ ଲତା ପତ୍ର,
ହସୁଥିଲା ମନ୍ଦ ମୃଦୁ ନୀଳାକାଶେ ଗୁହିଁ ଇନ୍ଦୁ,
କ୍ଷଣେ ହେଲା ଉସରତ କି ଶ୍ୱେତ କେଜାଣି ।

ନନ୍ଦିକା—ଶାରଦା ! ଫିଙ୍ଗିଦେ ଏ' ସାଜ—ଏ ସାଜ ତୋର ଯୋଗ୍ୟ ନୁହେ

ଶାରଦା—କାହିଁକି ନୁହେଁ, ସଖି ?

ନନ୍ଦିକା—ଯେଉଁ ଉଦ୍ଦେଶ୍ୟରେ ତୁ ଧାରଣ କରିଛୁ, ତା'ର କି ଏ' ଯୋଗ୍ୟ ସାଜ ?

ଶାରଦା—ସଖି ! ଏହାହିଁ ଯୋଗ୍ୟ ସାଜ—କାରଣ ସାଜର ଉଦ୍ଦେଶ୍ୟ ଆକର୍ଷଣ କରିବା ।

ନନ୍ଦିକା—ତୋ'ର ଉଦ୍ଦେଶ୍ୟ କ'ଣ, ଖାଲି ଆକର୍ଷଣ କରିବା ?

ଶାରଦା—କଦାପି ନୁହେ—ପତଙ୍ଗକୁ ଅଗ୍ନିରେ ନିପାତିତ କରି ତିଳି ତିଳେ ଦଗ୍ଧ କରିବା । ଅନୁରୋଧ କରୁଛି, ସଖି ! ଥରେ ମାତ୍ର ତୁମ୍ଭର ପ୍ରଜ୍ୱଳିତ ଶିଖା ବିସ୍ତାର କର—ତୁମ୍ଭର ଦାହିକା ଶକ୍ତି ପ୍ରକାଶ କର—ମୁଁ ତୁମ୍ଭର କେମିତି ଗୁଣ ଗାନ କରି ପତଙ୍ଗକୁ ଭୁଲାଇ ନେଇ ଆସେଁ—ତା'ପର—ତା'ପର—ହତଭାଗ୍ୟ ମୁଚ୍ଛୁଟନ୍ତିଆଟିଏ ଛଟ୍ ପଟ୍ କରିବାକୁ ଲାଗିବ; ଆଉ ମୁଁ, ସେ ଦୃଶ୍ୟ ଦେଖି, ଆନନ୍ଦରେ ଧେଇ ଧେଇ ହୋଇ ନାଚି ବୁଲିବି—

ନନ୍ଦିକା—ଶାରଦା ! ଶାରଦା ! ତୁ ଏତେ ପିଶାଚୀ ହୋଇଛୁ !

ଶାରଦା—ସାଧେ କି ହୋଇଛି, ସଖି ? ବାଧ୍ୟରେ । ବାଧ୍ୟରେ । ଅନୁରୋଧ କରୁଛି, ସଖି । ଏ' ଭାବ ମୋର ଆଉ ପରିବର୍ତ୍ତିତ କରିଦିଅ ନାହିଁ—ମୁଁ ପ୍ରତିଜ୍ଞା କରିଛି, ପିତାଙ୍କର ଅଭିଳାଷାନୁଯାୟୀ ମୋର ପିତୃ-ନିର୍ଯାତନର ପ୍ରତିଶୋଧ ଏହିପରି ଭାବେ ମୁଁ ସାଧନ କରିବି ।

ନନ୍ଦିକା—ଏତେଦୂର । ଅଚ୍ଛା, ଆଜି ତୋର ମନସ୍କାମନା ପୂର୍ଣ୍ଣ କରୁଛି ।

ଶାରଦା—ଧନ୍ୟ ସଖି । ଏ' ଅନୁଗ୍ରହର କି କୃତଜ୍ଞତା ଜ୍ଞାପନ କରିବି ?

ନନ୍ଦିକା—ଛାମ ହୋଇ ନ ସରୁଣୁ ?—ଆଜି କ'ଣ ତା'ଙ୍କୁ ଏଠାକୁ ଆଣି ପାରିବୁ ?

ଶାରଦା—ଆଜି କାହିଁକି ? କହିଲେ, ଏହିକ୍ଷଣି ଆଣି ପାରିବି ।

ନନ୍ଦିକା—ଅଚ୍ଛା, ଯା—ଯିବାବେଳେ ଚମ୍ପାକୁ ଡାକି ଦେଇଯିବୁ ।

ଶାରଦା—ଅଚ୍ଛା । ( ସ୍ୱଗତ ) ମନ । ଦୃଢ଼ ହୁଅ—ପ୍ରତିଶୋଧ । ପ୍ରତିଶୋଧ ।

( ଶାରଦାର ପ୍ରସ୍ଥାନ )

ନନ୍ଦିକା—ମାନବ ଯେତେ ହିଂସାପରାୟଣ ହେଉ—ଯେତେ ପିଶାଚ ହେଉ, ଘୃଣା କରିବା କଦାପି ଉଚିତ ନୁହେଁ । ମୋର କ୍ଷୁଦ୍ର ହୃଦୟରେ ଯେତେ ଶକ୍ତି ଅଛି, ସମସ୍ତ ପ୍ରୟୋଗ କରି ଚେଷ୍ଟା କରିବି—ମନୁଷ୍ୟ କପର ପଶୁତ୍ୱ ବିସର୍ଜନ କରିବ, ମନୁଷ୍ୟ କପର ପ୍ରକୃତ ମନୁଷ୍ୟ ହେବ ।

( ଚମ୍ପାର ପ୍ରବେଶ )

ନନ୍ଦିକା—ଚମ୍ପା—ଶୁଣ । ( କାନରେ କହିବା )

ଚମ୍ପା—( ହସିବା )

ନନ୍ଦଦା—ହସନା—ଯା’ କହୁଁଛୁ, ତା’କର ।

ରମ୍ମା—ଯଥ ଆଜ୍ଞା ।

ନନ୍ଦଦା—ଆଜ୍ ଶୁଣ, ମୋର ଇଙ୍ଗିତ ମାତ୍ରେ, ତୁମ୍ଭେମାନେ ଯେପରି ଏଠାରେ ଉପସ୍ଥିତ ହେବ । ( ରମ୍ମାର ପ୍ରସ୍ଥାନ )

ନନ୍ଦଦା—ଚାଲ, ମୋର ମଧ୍ୟ ଟିକିଏ କାମ ଅଛି ।

( ନନ୍ଦଦାର ପ୍ରସ୍ଥାନ )

[ ଶାରଦା ଓ ସୁସଜ୍ଜିତ ହୋଇ ବୀରେନ୍ଦ୍ରର ପ୍ରବେଶ ]

ଶାରଦା—ଏମିତ ଚୈରପର ହେଉଛନ୍ତି କାହିଁକି ?

ବୀରେନ୍ଦ୍ର—ଅସ୍ତ୍ରେ, ଅସ୍ତ୍ରେ—ଚୈର କରବ କୁ ଯାଉଛୁ, ଚୈରପର ହେବ ନାହିଁ ?

ଶାରଦା—‘ବିବାହ’ ଅର୍ଥ କ’ଣ ଚୈର ?

ବୀରେନ୍ଦ୍ର—ପାଠି କରନା ବୈଷ୍ଣବୀ !—ରଜାଙ୍କ ଅଜ୍ଞାତସାରେ ପରି ଏ’ କାମ ହେଉଛି ?

ଶାରଦା—ଅସ, ଚଞ୍ଚଳ ଅସ—କେମାଦେଇ ପେ ଅନାଇ ଅନାଇ ବିରକ୍ତ ହେଉଥିବେ ।

ବୀରେନ୍ଦ୍ର—ତୁମେ ଟିକିଏ ଅଗ ବଢ଼ିଚାଲ, ଦେଖ କେହି ଜଗୁଅଛି ଅଛିଁ କି ନାହିଁ ?

ଶାରଦା—ଆପଣ କ’ଣ ମତେ ମୂର୍ଖ ମନେ କରୁଛନ୍ତି ?

ବୀରେନ୍ଦ୍ର—ଅସମ୍ଭବ—ହୂଜୀ ସୁଚତୁରୀ ହୋଇ ନଥିଲେ କି ଯୁଗଳ ମିଳନ ଏତେ ସହଜରେ ଘଟୁଥାନ୍ତା ?—ତେବେ ଜାଣିଛ ବୈଷ୍ଣବ ! ଏହି କାନ୍ଥ ପଥର ଗୁଡ଼ାକର ମଧ୍ୟ କାନ ଅଛି । ରଜା ଯେବେ ଘୁଣାକ୍ଷରେ ଏ’କଥା ଜାଣି ପାରନ୍ତି, ତେବେ ତୁମର ଅଜ୍ ମୋ’ର ଦଶା ଯେ କ’ଣ ହେବ, ତା’ ଟିକିଏ ଭାବୁଛ କି ?

ଶାରଦା—(ସ୍ୱଗତ) ତୋ'ର ପ୍ରାଣନାଶ--ମୋର ପ୍ରତିହିଂସା ସାଧନ ।

[ ନନ୍ଦକାର ସୁସଜ୍ଜିତା ହୋଇ ପ୍ରବେଶ ]

ନନ୍ଦକା—ଦୂତ ! ଏତେ ବିଳମ୍ବ କଲ୍ କି ହିଁକି ?—ମୁଁ ଯେ ବସ-ନ୍ତରାଜଙ୍କର ବିରହଜ୍ୱାଳା ଆଦୌ ସହ୍ୟ ପାରୁନାହିଁ ?

ବୀରେନ୍ଦ୍ର—କ୍ଷମାକର, କ୍ଷମାକର ସୁନ୍ଦରୀ ! ଅଧମ କିଙ୍କର ଯେ ତୁମ୍ଭର ସେବାରେ ସଦା ନିଯୁକ୍ତ ! ( ବୀରେନ୍ଦ୍ର ଅବନତ ହେବା )

ନନ୍ଦକା—ବୈଷ୍ଣବ ! ମୋର ଅଜ୍ଞ ଆନନ୍ଦବର୍ଦ୍ଧନ—ଏ'ପରି ଦୀନରେ ତାହାରକୁ ମଳିନ ବେଶରେ ଦେଖିବା ଉଚିତ ନୁହେଁ ।

ବୀରେନ୍ଦ୍ର—ନିଶ୍ଚୟ ନୁହେଁ ।

ନନ୍ଦକା—ଚମ୍ପା ! ( ଚମ୍ପାର ପ୍ରବେଶ )

ଚମ୍ପା—ଜେମାଦେଈ !

ନନ୍ଦକା—ଯା, ବୈଷ୍ଣବୀକୁ ଘେନି ଯା—ବେଶ୍ ଭଲକରି ସଜାଇ ଘେନି ଆ ।

ଶାରଦା--ଜେମାଦେଈ ! ଏ' ବୈଷ୍ଣବୀଟାକୁ ସଜାଇବାର କି ପ୍ରୟୋଜନ ?

ନନ୍ଦକା—ଖୁବ୍ ପ୍ରୟୋଜନ ଅଛି, ବୈଷ୍ଣବ ! କୁହ ପ୍ରେମରାଜ, ଯେଉଁ ବୈଷ୍ଣବୀ ଯୋଗୁଁ ଆଜି ପ୍ରେମିକ ପ୍ରେମିକାର ମିଳନ ସମ୍ଭବ ହୋଇଛି—ତାଙ୍କୁ କ'ଣ ଏ'ପରି ଦୀନ ମଳିନ ବେଶରେ ଦେଖିବା ଉଚିତ ?

ବୀରେନ୍ଦ୍ର—କଦାପି ନୁହେଁ—ଯାଅ ବୈଷ୍ଣବ ! ମୋର ମଧ୍ୟ ସେହି ଅନୁରୋଧ—ଅବହେଳା କରନାହିଁ ।

ଶାରଦା—(ଏକାନ୍ତେ ନନ୍ଦକାକୁ) ହାତଧରି ଅନୁରୋଧକରୁଛି,ସଖି ! ପ୍ରତିଶୋଧ ନେବାକୁ ଯେପରି ଭୁଲି ନ ଯାଅ—ପ୍ରହରୀମାନଙ୍କୁ ଖବର ଦିଆ ହୋଇଛି—ନା ମୁଁ ଦେବି ?

ନନ୍ଦକା—( ଏକାନ୍ତେ ବିରକ୍ତିସହ ) ତୁ ଯା'ନା ।

ଶାରଦା—( ଏକାନ୍ତେ ) ଯାଉଛ । ( ସ୍ୱଗତ ) ମୋର ଏ ବେଶରେ ଆଉ କି ପ୍ରୟୋଜନ ? ବରଂ ଯେଉଁ ବେଶରେ ମୋତେ ଦେଖିଲେ ନରାଧମର ଦଣ୍ଡ ଯନ୍ତ୍ରଣା ଅଧିକ ବର୍ଦ୍ଧିତ ହେବ, ସେହି ବେଶ ଧାରଣ କରିବାହିଁ ଶ୍ରେୟସ୍କର--କିନ୍ତୁ,ଓଃ । ମନ । ଦୃଢ଼ ହୁଅ ।                    ( ତମ୍ବାସ୍କର ପ୍ରସ୍ଥାନ )

ନନ୍ଦିକା—ସେନାପତେ । ତୁମ୍ଭେ କ'ଣ ପ୍ରକୃତରେ ମୋତେ ଭଲପାଅ ?

ବୀରେନ୍ଦ୍ର—ଏଥିରେ ପୁଣି ସନ୍ଦେହ ଅଛି, ସୁନ୍ଦରି ?

ନନ୍ଦିକା--ତୁମେ ଯଦି ମୋତେ ବିବାହ କର, ପୁଣି ତା'ର ପରି କର ?

ବୀରେନ୍ଦ୍ର—କା'ପରି ?

ନନ୍ଦିକା—ଭୁଲିକି ଗଲ, ଯା'କୁ ପିଲଦିନୁ ଭଲପାଉଥିଲ—ଗାନ୍ଧର୍ବ ମତେ ବିବାହ ମଧ୍ୟ କରିଥିଲ ?

ବୀରେନ୍ଦ୍ର—( ସଭୟେ ) ମୁଁ—ବି-ବା-ହ କରିଥିଲି ?

ନନ୍ଦିକା—ଦାଇ ଆଗରେ ଯେତେ ଲୁଚାଇଲେ କ'ଣ ହେବ ? ତୁମେ କ'ଣ ଜାଣ ନାହିଁ, ସେ ମୋର ପ୍ରାଣର ସହଚରୀ ଥିଲା ?

ବୀରେନ୍ଦ୍ର—ସେ ନିଶ୍ଚୟ ମିଛ କହୁଛି, ସୁନ୍ଦରି ।—ମୁଁ ରାଜକୁମାର ପ୍ରଣୟପ୍ରାର୍ଥୀ, ଏହି ହିଂସାରେ ସେ ସେପରି କହୁଥିବ ।

ନନ୍ଦିକା—ତେବେ କଣ ସେ ମିଥ୍ୟାବାଦିନୀ ?

ବୀରେନ୍ଦ୍ର—ନିଶ୍ଚୟ ମିଥ୍ୟାବାଦିନୀ, ସୁନ୍ଦରି ।

ଶାରଦା—( ନେପଥ୍ୟେ ) ମୋ ସମ୍ମୁଖରେ ମୋତେ ମିଥ୍ୟାବାଦିନୀ କହିବାକୁ ସାହସ କରୁଛୁ ନରାଧମ ?

ବୀରେନ୍ଦ୍ର—ଏ' କା'ର କଣ୍ଠସ୍ୱର ।

ନନ୍ଦିକା—କା'ର କଣ୍ଠସ୍ୱର ପରି ବୋଧ ହେଉଛି ?

ବୀରେନ୍ଦ୍ର—ଏ'ଯେ ଶାରଦାର କଣ୍ଠସ୍ୱର ପରି ବୋଧହେଉଛି ।(ଅର୍ଦ୍ଧ ସ୍ୱଗତ ) ସେ ଏଠାକୁ କିପରି ଆସିଲା ? ସେ କି ମୃତ ? — ଏ'କି ତାର ପ୍ରେତାତ୍ମାର କଣ୍ଠସ୍ୱର ?

ନନ୍ଦିକା—ଭୁଲିଯାଉଛନ୍ତି, ସେନାପତେ ?—ତୁମ୍ଭେ ଠିକ୍ ଠିକ୍ କୁହ, ନଚେତ୍ ଭାରି ବିପଦରେ ପଡ଼ିବ ।

ବୀରେନ୍ଦ୍ର—ସୁନ୍ଦରି ! ସୁନ୍ଦରି ! ଏହି ସୌନ୍ଦର୍ଯ୍ୟ ଲାଳସାରେ ବୀରେନ୍ଦ୍ର ଆଜି ପତ୍ନୀତ୍ୟାଗୀ ହୋଇଛି—ଆଶ୍ରୟଦାତାର ଜୀବନ୍ମୃତ୍ୟୁର କାରଣ ହୋଇଛି—ରାଜମାଦେଈଙ୍କର ବିବାହ-ପଥରେ କଣ୍ଟକ ହୋଇଛି ।

ନନ୍ଦିକା—ଏହି ଗୁରି କ୍ଷଣସ୍ଥାୟୀ ପାର୍ଥିବ ବିକୃତ ଶରୀର ଲୋଭରେ ବୀରେନ୍ଦ୍ର ପରି ବୀର ଆଜି ଏତେଦୂର ଘୃଣ୍ୟ, ଜଘନ୍ୟ କାର୍ଯ୍ୟ କରିଛି ?

ବୀରେନ୍ଦ୍ର—ଜାଣେ ନାହିଁ ସୁନ୍ଦରି । ସେ ସୌନ୍ଦର୍ଯ୍ୟରେ କି ଉନ୍ମାଦନା ଅଛି ?

ନନ୍ଦିକା—ଏ' ସୌନ୍ଦର୍ଯ୍ୟର ଉନ୍ମାଦନା ନୁହେଁ ମୂର୍ଖ । ଏ' ତୋର କାମଚକ୍ଷୁର ଉନ୍ମାଦନା--ତୋ'ର ବିକୃତ ଲାଳସାର ଉନ୍ମାଦନା ।

ବୀରେନ୍ଦ୍ର—ନା, ସୁନ୍ଦରି ! ଏ'ମୋର ହୃଦୟର ଉନ୍ମାଦନା ।

ନନ୍ଦିକା—ହୃଦୟର ଉନ୍ମାଦନା ? ତେବେ ଆସ, ମୋତେ ଆଲିଙ୍ଗନ କର !

[ ନନ୍ଦିକା ହାତକୁ ବଢ଼ାଇଥିବା ଓ ବୀରେନ୍ଦ୍ର ଅଗ୍ରସର ହେଉଥିବା, ଶେଷେ ନନ୍ଦିକା କଙ୍କାଳମୂର୍ତ୍ତିରେ ପରିଣତ ହେବା ଓ ବୀରେନ୍ଦ୍ର ନିରସ୍ତ ହେବା ]

ନିରସ୍ତ ହେଲ କାହିଁକି ? ମୁଁ ତ ସେହି ସୁନ୍ଦରୀ—ମୁଁ ତ ସେହି ଶରୀରାଶ୍ରିତା ରୂପର—ଯା'ଲାଗି ସ୍ତ୍ରୀକୁ ତ୍ୟାଗ କରିଛ—

ପିତୃତୁଲ୍ୟ ଅଶ୍ରୁଦାତାଙ୍କୁ ନିର୍ବାସିତ କରିଛ—ସ୍ୱରାଜ୍ୟର ସର୍ବନାଶ ସାଧନ କରିଛ ।

ବୀରେନ୍ଦ୍ର—ଏହି କି ସେହି ସୌନ୍ଦର୍ଯ୍ୟ, ଯା'ର ପ୍ରଲୋଭନରେ ମୁଁ ଏତେକ୍ରୂର କାର୍ଯ୍ୟ କରିଛି?—ଏ'ଯେ ଆବରଣ ମାତ୍ର ! ତେବେ ସୌନ୍ଦର୍ଯ୍ୟ, କୁତ୍ସିତତା ମଧ୍ୟରେ ପ୍ରଭେଦ କେଉଁଠି, ଉଭୟର ମୂଳବସ୍ତୁ ଯେତେବେଳେ ଏହି ଘୃଣ୍ୟ କଙ୍କାଳ ମୂର୍ତ୍ତି ?

( ବାହୁଦ୍ୱୟ ନେତ୍ରରେ ରୁହିଁ ରହିବା )

ନନ୍ଦିକା—ରାଜ୍ୟର ଲୋଭ ଯେବେ କରିଥାଅ ସେନାପତେ—ଅର୍ଥର ଲୋଭ ମଧ୍ୟ କରିଥାଅ, ତେବେ ଏହି ମୋହ ଯବନିକା ହଟାଇ ଦେଉଛି, ଏହାର ଅପର ପାର୍ଶ୍ୱକୁ ଥରେ ଅବଲୋକନ କର ।

[ ଦୃଶ୍ୟ ପରିବର୍ତ୍ତନ, ଶ୍ମଶାନ ଦୃଶ୍ୟ-ଏକସ୍ଥାନରେ ଗୋଟିଏ ଦରିଦ୍ର ଓ ଗୋଟିଏ ଧନୀର ଶବ ଦେହ ରକ୍ଷିତ ]

ବୀରେନ୍ଦ୍ର—ଏ' କ'ଣ ଦେଖୁଛି ?—ଏହି କି ଧନର ପରିଣାମ ? ମୃତ୍ୟୁପରେ ଧନୀ ଦରିଦ୍ର ଏକ-ଶଯ୍ୟାରେ ଶାୟିତ ।

ନନ୍ଦିକା—ଏ ଶ୍ମଶାନ କ୍ଷେତ୍ର, ଘୃଣ୍ୟ ପବିତ୍ର କ୍ଷେତ୍ର, ସେନାପତେ ! ଏଠାରେ ଧନୀ ଦରିଦ୍ର ମଧ୍ୟରେ ପାର୍ଥକ୍ୟ ନାହିଁ—ସୁଖୀ ଦୁଃଖୀ ମଧ୍ୟରେ ପ୍ରଭେଦ ନାହିଁ—କ୍ଷୁଦ୍ର, ବୃହତ୍, ଉଚ୍ଚ ନୀଚ, ସମସ୍ତେ ସମାନ ।

ବୀରେନ୍ଦ୍ର—ଜେମାଦେଇ । ଜେମାଦେଇ । ଆଜ କି ନୂତନ ଦୃଶ୍ୟ ଦେଖାଇଲେ ? କି ନୂତନ ଭାବ ଜଗାଇ ଦେଲେ ? କହନ୍ତୁ ଜେମାଦେଇ ! ସ୍ତ୍ରୀର ପ୍ରକୃତ ସୌନ୍ଦର୍ଯ୍ୟ କେଉଁଠାରେ ?—ଏ ସଂସାରରେ ପ୍ରକୃତ ସମ୍ପଦ କେଉଁ ବସ୍ତୁ ?

ନନ୍ଦକା—ପ୍ରକୃତ ସମ୍ପଦ—ତୃପ୍ତ ଶାନ୍ତି। ସ୍ତ୍ରୀର ପ୍ରକୃତ ସୌନ୍ଦର୍ଯ୍ୟ—
ଶାରଦାକୁ ସ୍ମରଣ କର, ତା'ର ସରଳତା ଓ ସରଳ ବିଶ୍ୱାସ
ବିଷୟ ଥରେ ଚିନ୍ତାକର—ଅନ୍ତର ମଧ୍ୟ ବୈଷ୍ଣବୀର ଅକ୍ଳାନ୍ତ ଓ
ନିଃସ୍ୱାର୍ଥ ସେବା ଶୁଶ୍ରୂଷା ବିଷୟ ଥରେ ଭାବି ଦେଖ, ସମ୍ପୂର୍ଣ୍ଣ
ଭାବେ ଉପଲବ୍ଧି କରି ପାରିବ।

[ ପରିବର୍ତ୍ତିତ ପଟର ପତନ ଓ ନନ୍ଦକାର ପୂର୍ବ ବେଶରେ ଆଗମନ ]

ବୀରେନ୍ଦ୍ର—ଓଃ, ଶାରଦା। ଶାରଦା। ଏ' ନରାଧମ କରିଛି କ'ଣ?
ଓଃ। (ସ୍ୱଗତ) କି ବୃଶ୍ଚିକ ଦଂଶନ ଅନୁଭବ କରୁଛି—ଓଃ।

ନନ୍ଦକା—ଅଜି ଭାବିଲେ ହେବ କ'ଣ? ଯା' କରିଛ, ତା'ର ଫଳ
ଏବେ ଭୋଗ କର।

ବୀରେନ୍ଦ୍ର—ଜାଣେନାହିଁ, ଜେମାଦେଇ! ଏ'ପାପ ଜୀବନରେ ଆଜି
କି ଯନ୍ତ୍ରଣା ଲେଖିଛି ଅଛି—କି ଫଳଭୋଗ ନିର୍ଦ୍ଦିଷ୍ଟ ଅଛି?

ନନ୍ଦକା—ଯା' ତୁମର ସ୍ତ୍ରୀଙ୍କ ପ୍ରତି କରିଛ ବା ଯା' ତୁମର ଆଶ୍ରୟ-
ଦାତାଙ୍କ ପ୍ରତି କରିଛ, ତାର ଫଳ ଭୋଗିବ କରିବ—ମାତ୍ର
ରାଜଜେମା ପ୍ରତି ବର୍ତ୍ତମାନ ଯେଉଁ ଅବୈଧାଚରଣ କରିଛ,
ତାର ଫଳ-ଭୋଗ କ'ଣ, ଜାଣୁ ଅଛ କି?

ବୀରେନ୍ଦ୍ର—ଜାଣୁଛି ଜେମାଦେଇ। ରଜନୀରେ, ଗୋପନରେ
ରାଜାନ୍ତଃପୁରରେ ପ୍ରବେଶ—ଜେମାଙ୍କ ସହିତ ନିର୍ଜନ ସାକ୍ଷାତ୍,
ତାର ଫଳଭୋଗ—ମୃତ୍ୟୁ।

ନନ୍ଦକା—ସେ ଦଣ୍ଡ ଗ୍ରହଣ କରିବାକୁ ତୁମ୍ଭେ ତେବେ ପ୍ରସ୍ତୁତ?

ବୀରେନ୍ଦ୍ର—ନିଶ୍ଚୟ ପ୍ରସ୍ତୁତ, ଜେମାଦେଇ। ମୋର ଦୋଷର
ଗୁରୁତ୍ୱ ତୁଳନାରେ ଏ' ଶାସ୍ତି କିଅବା ମାତ୍ର।

ନନ୍ଦକା—ମୁଁ କିନ୍ତୁ ଏହାଠାରୁ କଠିନତର ଶାସ୍ତି ଦେବି, ସେନାପତେ।

ବୀରେନ୍ଦ୍ର—ଧଅନ୍ତୁ କେମାଦେଈ । ଯେତେହେଁର କଠିନତର ଶାସ୍ତି ଆପଣ ଉଦ୍ଭାବନ କରପାରନ୍ତି—ତଥାପି ଏ' ନରାଧମର ଅପରାଧ ନିଶ୍ଚୟ ଗୁରୁତର ହେବ ।

ନନ୍ଦକା—କିଏ ଅଛ, ବାନ୍ଧ ଏହି ନରାଧମକୁ ।

[ ଦୁଇଜଣ ସୈନ୍ୟବେଶୀ ସଖିର ପ୍ରବେଶ ଓ ବୀରେନ୍ଦ୍ରକୁ ବନ୍ଧନ ]

ସେ ଦୁଷ୍ଟା ବୈଷ୍ଣବୀ କେଉଁଆଡ଼େ ଗଲା ? ତାକୁ ମଧ ବାନ୍ଧି ନେଇଅସ

[ ଔଢ଼ଣା ଦେଇଥିବା ଶାରଦାକୁ ନେଇ ଦୁଇଜଣ ସଖୀର ପ୍ରବେଶ]

ବୀରେନ୍ଦ୍ର—ବୈଷ୍ଣବୀକୁ କ୍ଷମା କରନ୍ତୁ, କେମାଦେଇ—ସେ ନିର୍ଦ୍ଦୋଷ—

ନନ୍ଦକା—ଚୁପ୍‌କର । ଉଭୟେ ଦୋଷୀ—ଉଭୟଙ୍କୁ ଏକତ୍ର ବାନ୍ଧି ସମୁଚିତ ଶାସ୍ତି ଦେବାକୁ ହେବ ।

ଶାରଦା—ଝିହ୍ମ । ସହ୍ମ ।—ଦଅ, ଦଅ ସହ୍ମ । ଏ' ଅଭାଗୀର ମଧ ସମସ୍ତ ଅଶାନ୍ତି ଦୂର କରିଦଅ ।

ବୀରେନ୍ଦ୍ର—ଏ'ଯେ ଶାରଦା । ଶାରଦା ଶାରଦା ! (ଅଗ୍ରସର ହେବା)

ନନ୍ଦକା—ସ୍ଥିର ହୁଅ—ମୁଁ ଆଗେ ଦଣ୍ଡ ଦେଇ ସାରେ ।

( ମାଳା ବଦଳାଇବା )

ବୀରେନ୍ଦ୍ର—(ଅବନତ ହୋଇ) ଦେବି । ଦେବି କ୍ଷମାକର, କ୍ଷମାକର

ନନ୍ଦକା—(ଉଠାଇ) ଏ' ପ୍ରାର୍ଥନା ଯାଙ୍କୁ କରିବା ଉଚିତ, ତାଙ୍କୁ କର, ସେନାପତେ ।

ବୀରେନ୍ଦ୍ର—ଠିକ୍ କହିଛନ୍ତି, କେମାଦେଈ !—ଶାରଦା ! ପ୍ରିୟେ !—

ଶାରଦା—ପ୍ରାଣେଶ୍ୱର । ( ଅଲିଙ୍ଗନ କରିବା )

ବୀରେନ୍ଦ୍ର—କୁହ ପ୍ରିୟେ । ତୁମର ଅଉ କୋଧ ନାହିଁତ ? ମୂର୍ଖ ସ୍ୱାମିକୁ କ୍ଷମ୍ମିର କ୍ଷମା କରିଛତ ?

ଶାରଦା—( ଗଦ ଗଦ ସ୍ୱରେ ) ଏ' ଦାସୀକୁ କ୍ଷମାକର, ପ୍ରଭୋ ! ( ପଦଧୂଳି ନେଇ ) ଆସ ପ୍ରଭୋ । ଯେ କି ଉଭୟଙ୍କୁ କ୍ଷମା କର

ପାରିବେ, ତାଙ୍କର ଚରଣ ବନ୍ଦନା କରିବା ଆସ । ( ଜଣଙ୍କୁ ଅବନତ ହେବା )

ନନ୍ଦିକା—(ଉଠାଇ) ଛି ସଖି । ଯେ କି ସମସ୍ତଙ୍କୁ କ୍ଷମା କରିପାରନ୍ତି, ତା'ଙ୍କ ପ୍ରାର୍ଥନା କରିବା ଭଲ ।

ସମସ୍ତେ—ଜୟ ମଙ୍ଗଳମୟ ପରମେଶ୍ୱରଙ୍କର ଜୟ ।

ଶାରଦା - ( ସ୍ୱଗତ ) ହା ପିତଃ, କାହିଁ ତୁମ୍ଭେ ?

ନନ୍ଦିକା—ଗାଅ ସଖୀଗଣ—

( ନନ୍ଦିକାର ପ୍ରସ୍ଥାନ )

[ ସଖୀଗଣ—ଗୀତ ]

ଅଜି, କୋମଳେ ମଧୁରେ, ଆଲୋକେ ସୁନ୍ଦରେ
ବାଜୁଛି ମଙ୍ଗଳ ଗାନ ।
ଅଜି, ସଘନେ ଗଗନେ, ପବନେ ଭୁବନେ
ଉଠୁଛି ସେ ଗୀତ ତାନ ।
ଅନ୍ତଃ ସଲିଳା ଅଜି, ବରଷା ପ୍ରବାହେ ମଜ୍ଜି
ଲଙ୍ଘି ପର୍ବତସଜ୍ଜ, ନାଚୁଛି ଧାଉଁଛି ସାଗର ସଙ୍ଗେ
ମିଶାଇଦେବ ତା' ପ୍ରାଣ ।
ବାହୁ ପସାରି ନାଗର, ନୀରଜା ଧରିବ କରେ କର
ଚୁମ୍ବନ ଭଙ୍ଗେ, ରଞ୍ଜିତ ରଙ୍ଗେ ହେଲା ଅଜି ଦ୍ରାଣେ ପ୍ରାଣ ଦାନ ।

( ସଖୀମାନଙ୍କର ପ୍ରସ୍ଥାନ ଓ ନନ୍ଦିକାର ପତ୍ର ହସ୍ତେ ପ୍ରବେଶ )

ନନ୍ଦିକା—ସେନାପତେ । ଭାରି ଦୁଃସମ୍ବାଦ । ବାସୁଦେବ ମନ୍ତ୍ରୀ ମୃତ୍ୟୁ ମୁଖରେ--ଥରେ ସେ ଅମ୍ଭମାନଙ୍କୁ ଦେଖିବାକୁ ଚାହାନ୍ତି;ମୋତେ ଓ ଶାରଦାକୁ ଲେଖିଛନ୍ତି—ତଥାପି, ତୁମ୍ଭଙ୍କୁ ଯିବାକୁ ହେବ—

ବର୍ତ୍ତମାନ ମାନ ଅଭିମାନର ସମୟ ନୁହେଁ, ଆସ ଦେଖିବା କପର ସେ ରକ୍ଷା ପାଇବେ !

ବୀରେନ୍ଦ୍ର—ଅଶ୍ରୁମୁଦାଙ୍କୁ କ'ଣ ରକ୍ଷା କରି ପାରିବା? ଏତେ ସୌଭାଗ୍ୟ ହେବ ମୋର ? ଆସନ୍ତୁ, ଶୀଘ୍ର ଜେମାଦେଇ ।
( ବେଗେ ପ୍ରସ୍ଥାନ )

ଶାରଦା—ପିତା ! ପିତା !

ନନ୍ଦନା—ବ୍ୟସ୍ତ ହ'ନା ସଖୀ । ନିଜର ଉପଦେଶ ନିଜେ ପାଳନ କର । ( ଉଭୟଙ୍କ ପ୍ରସ୍ଥାନ )

## ତୃତୀୟ ଦୃଶ୍ୟ

[ ଶିବିରସ୍ଥ କାରାଗାର—ବାସୁଦେବ ଏକାକୀ ]

ବାସୁଦେବ—ହାୟ ବିଧାତ ତୋ'ର, ବାଧୁ । ପାପ ଉଦ୍ଦେଶ୍ୟ ସାଧନର ପଥ ଯେତିକି ସରଳ ଓ ସୁଗମ କରି ଦେଇ, ସାଧୁ ଉଦ୍ଦେଶ୍ୟ ସାଧନର ପଥ ସେତିକି ବନ୍ଧ ଓ ଦୁର୍ଗମ କରି ଦେଉ । ଗାରେନ୍ଦ୍ର ଅନାୟାସେ ତା'ର ପାପ କାର୍ଯ୍ୟ ସମ୍ପନ୍ନ କରି ପାରିଲା—ରଜାମାନେ ଅକାରଣେ ଲକ୍ଷ ଲକ୍ଷ ଲୋକଙ୍କର ପ୍ରାଣନାଶ କରି-ପାରିଲେ—ଆଜ ମୁଁ ନିଜକୁ ବିପନ୍ନ କରି ସୁଦ୍ଧା ଗୋଟିଏ ମାତ୍ର ପ୍ରାଣ ରକ୍ଷା କରି ପାରିଲି ନାହିଁ, ଶତ ଚେଷ୍ଟା କରି ସୁଦ୍ଧା ସତ୍-କାର୍ଯ୍ୟ ସାଧନ ପଥରେ ପଦେ ମାତ୍ର ଅଗ୍ରସର ହୋଇ ପାରିଲି ନାହିଁ । ଯାହା, ବର୍ତ୍ତମାନ ଉପାୟ କ'ଣ ? ରାଜାଙ୍କର ଯେପରି ଭାବ ଦେଖୁଛି,-ସେଥିରେ ମୋର ପ୍ରାଣ ନାଶର ଆଦେଶ ଦେବା ମଧ୍ୟ ତାଙ୍କ ପକ୍ଷେ ବିଚିତ୍ର ନୁହେଁ; ମାତ୍ର ମୃତ୍ୟୁ ପୂର୍ବରୁ କ'ଣ ମୋର ଉଦ୍ଦେଶ୍ୟ ସଫଳ କରିପାରିବି ନାହିଁ ?—କିପରି ପାରିବି ? ସହାୟ ଶୂନ୍ୟ, ଏକା କିପରି ପାରିବି ? ଯେଉଁ ଶାରଦାକୁ ମୋର ପ୍ରଧାନ ସହାୟ ମନେ କରିଥିଲି—ସେତ ଏ' ପର୍ଯ୍ୟନ୍ତ ସାମାନ୍ୟ ପ୍ରତିଶୋଧ କାର୍ଯ୍ୟଟିକ ସାଧନ କରି ପାରିଲା ନାହିଁ, ଗୋଟାଏ ପ୍ରଧାନ ଅନ୍ତରାୟ ଅଦ୍ୟାପି ଦୁରୀଭୂତ ହୋଇ ପାରିଲା ନାହିଁ । ବିଶ୍ୱାସଘାତକଟା ଅଳ୍ପ ପ୍ରାଣରୁ ହେଉ ବା ରାଜ୍ୟରୁ ହେଉ ନିଷ୍କାସିତ ହୋଇଥିଲେ, ମୁଁ ନିଃଶଙ୍କଭାବେ ଗୁପ୍ତବେଶ ଧାରଣ ପୂର୍ବକ ଏ' ରାଜ୍ୟ ମଧ୍ୟରେ ଅବସ୍ଥାନ କରିପାରିଥାନ୍ତି ଓ ମୋର କାର୍ଯ୍ୟୋଦ୍ଧାର ଅତି ସହଜରେ ହୋଇ ଯାଇଥାନ୍ତା—ଶତ୍ରୁ ଶିବିରରେ ଏ'ପରି ଭାବେ ପ୍ରବେଶ କରି ଏ' ଲାଞ୍ଛନା

ଆଜି କଦାପି ମୋତେ ଭୋଗ କରିବାକୁ ପଡ଼ି ନ ଥାନ୍ତା— ଓଃ ! ଜଣକର କୃତଘ୍ନତା ଓ ବିଶ୍ୱାସଘାତକତାରେ ଅପରର କି ସର୍ବନାଶ ହୋଇପାରେ ! ସମଗ୍ର ରାଜ୍ୟର କି ଅନିଷ୍ଟ ଘଟିପାରେ !

( ବୀରେନ୍ଦ୍ର ଓ ଦୂତର ପ୍ରବେଶ )

ବୀରେନ୍ଦ୍ର—କାହାନ୍ତି, ପିତା ?

ଦୂତ—ଏହି ଯେ, ସେନାପତେ !

ବାସୁ—ଏ' କିଏ ?

ବୀରେନ୍ଦ୍ର—ରକ୍ଷିମାନେ କେହି ଡେଇଁ ଉଠିବେ ନାହିଁ ତ ?

ଦୂତ—କିଛି ଭୟ କରିବେ ନାହିଁ, ସେନାପତେ ! ମୁଁ ଭାଙ୍ଗରେ ଧୂତୁରାମଞ୍ଜି ମିଶାଇ ଦେଇ ସମସ୍ତଙ୍କୁ ବେହୁଁସ କରି ଦେଇଛି ।

ବୀରେନ୍ଦ୍ର—ଗୁରୁଜୀ ?

ଦୂତ—ଏହି କାଅନ୍ତି, ସେନାପତେ ।

ବାସୁ—ଏ' ଯେ, ସେହି କୃତଘ୍ନ—ନରାଧମ !

ବୀରେନ୍ଦ୍ର—ଆଉ ଦେଖ, ସେମାନଙ୍କୁ ନିଃଶବ୍ଦେ ଆସିବାକୁ କହିଦେବୁ ।

ଦୂତ—ଯେ ଆଜ୍ଞା ।                    ( ପ୍ରସ୍ଥାନୋଦ୍ୟତ )

ବାସୁ—ଦୂତ ! ଦୂତ ! ମୁଁ କାହାକୁ ପତ୍ର ଦେଇଥିଲି—ଆଉ ତୁ କେଉଁ ପିଶାଚକୁ ସଙ୍ଗରେ ଘେନି ଆସିଛୁ ?

ଦୂତ—ମନ୍ତ୍ରୀ ମହାଶୟ !

ବାସୁ—ଚୂପ୍‌କର, ନରାଧମ !—ମୁଁ ସମସ୍ତ ବୁଝିଛି, ଏ ସଂସାର କେବଳ ବିଶ୍ୱାସଘାତକତାର ଘେନ ।

ଦୂତ—ସେନାପତେ !

ବୀରେନ୍ଦ୍ର—ଯା ତୁ ଦୂତ । ମୁଁ ତାଙ୍କୁ ସମସ୍ତ ବୁଝାଇ ଦେଉଛି—
ଦେଖଣେ ଯେ ସାମାନ୍ୟ ଅସାବଧାନତାରେ ମହତ ବିପଦର ଆଶଙ୍କା । ( ଦୂତର ପ୍ରସ୍ଥାନ ) ପିତା ! ପିତା !

ବାସୁ—'ପିତା' । ଗୋଟାଏ ନୂତନ ସ୍ତୁତ୍ତିସ୍ବ ତୋ'ର ବିଶ୍ୱାସଘାତକ, ନା ?

ବୀରେନ୍ଦ୍ର—ସ୍ତୁତ୍ତିସ୍ବ, ନୁହେଁ, ପିତା—ଅଧମ ପୁତ୍ରକୁ କ୍ଷମାକରନ୍ତୁ ।

ବାସୁ—ସିଂହ ତୋର କପାଳକୁ ଶକ୍ତିଶୂନ୍ୟ ଶୃଗାଳ—ନଚେତ୍ 'ପିତା, 'କ୍ଷମା' ବୋଲି ପରିହାସ କରିବା ପୂର୍ବରୁ, ଜିହ୍ବା ତୋର କଣ୍ଠ ଦେଶରୁ ଉତ୍ପାଟିତ ହୋଇ ସାରନ୍ତାଣି, ଦେହ ତୋର କୁକୁର ଶୃଗାଳର ଭୋଜ୍ୟସାମଗ୍ରୀ ହୋଇ ସାରନ୍ତାଣି ।

ବୀରେନ୍ଦ୍ର—ମୋର ପାପର ଗୁରୁତ୍ୱ ତୁଳନାରେ, ଏ ଶାସ୍ତି ଯେ ଅତି ଲଘୁ, ପିତଃ ! ଯେବେ ଏପରି ଲଘୁ ଶାସ୍ତିରେ ମୋର ପାପକଳଙ୍କ ଧୌତ ହୋଇପାରେ, ତେବେ ଏହିକ୍ଷଣି ସେ ଶାସ୍ତି ଦାନ କରନ୍ତୁ, ପିତଃ !

ବାସୁ—ଅସହ୍ୟ ! ଏତେହେଁର ବ୍ୟଙ୍ଗ ଅସହ୍ୟ ! ମନ ହେଉଛୁ, ଏହି ଲୌହଦଣ୍ଡ ସବୁ ମୁଷ୍ଟ୍ୟାଘାତରେ ଖଣ୍ଡ ବିଖଣ୍ଡ କରିଦେଇ, ପଦାଘାତରେ ନରାଧମର ଅସ୍ଥିସମୂହ ଚୂର୍ଣ୍ଣ ବିଚୂର୍ଣ୍ଣ କରି ଦିଅନ୍ତି ।

ବୀରେନ୍ଦ୍ର—ତାହାହିଁ କରନ୍ତୁ, ପିତଃ ! ଅନ୍ତର ମଧ୍ୟ ଲୌହଦଣ୍ଡ ଉପରେ ବୃଥା ଶକ୍ତିକ୍ଷୟ ନ କରି—ସମସ୍ତ ଶକ୍ତି ଏ' ନରାଧମ ଉପରେ ପ୍ରୟୋଗ କରନ୍ତୁ, ପିତଃ !

[ ବାସୁଦେବ ରୋଷକଷାୟିତ ନୟନରେ ଚାହିଁ ରହିବା ଓ ବୀରେନ୍ଦ୍ର ଧୀରେ ଧୀରେ ଯାଇ କାରଦ୍ୱାର ଉନ୍ମୁକ୍ତ କରିଦେବା ]

ଏବେ ଯଥାଶାସ୍ତି ଦିଅନ୍ତୁ ପିତଃ ! ( ଅଣ୍ଟୁମାଡ଼ି ବସିବା )

[ବାସୁଦେବ ଅଷ୍ଟର୍ଯ୍ୟଭବେ ଚାହିଁ ଠିଆ ହେବା]

( ନନ୍ଦକା ଓ ଶାରଦାର ପ୍ରବେଶ )

ନନ୍ଦକା—ଏଥ ଏବେ ଉପଯୁକ୍ତ ଶାସ୍ତି, ମନ୍ତ୍ରୀଭାଇ !

ବାସୁ—ଏ କ'ଣ ଦେଖୁଛି, ଜେମାଦେଇ ? ଏହ କ ସେହ ବୀରେନ୍ଦ୍ର ?

ନନ୍ଦକା—ହଁ ଭାଇ, ଏହ ସେହ ବୀରେନ୍ଦ୍ର—ତୁମ୍ଭର ସ୍ନେହାଧିକ ଲାଳିତ ପାଳିତ ସେହ ବୀରେନ୍ଦ୍ର—ତୁମ୍ଭର ଏକମାତ୍ର ଦୁହିତାର ହୃଦୟସର୍ବସ୍ୱ ସେହ ବୀରେନ୍ଦ୍ର—ତୁମ୍ଭର ବହୁମାନ୍ୟ, ଅମିତ-ତେଜା ସେହ ବୀରେନ୍ଦ୍ର ।

ବୀରେନ୍ଦ୍ର—ଜେମାଦେଇଙ୍କ କରୁଣାରୁ କିନ୍ତୁ ସେହ ବୀରେନ୍ଦ୍ର ଅଜ୍ଞ ତୁମ୍ଭର ଶ୍ରୀଚରଣତଳେ, ପିତଃ ।

ବାସୁ—ଜେମାଦେଇ । ଜେମାଦେଇ । ତୁମ୍ଭେ ମାନବୀ ନା ଦେବୀ ?

ବୀରେନ୍ଦ୍ର—ଦେବୀ, ପିତଃ !

ବାସୁ—( ବୀରେନ୍ଦ୍ରକୁ ଆଲିଙ୍ଗନ କରି ) ନିଶ୍ଚୟ ଦେବୀ, ବୀରେନ୍ଦ୍ର । ଦେବୀ ଛଡ଼ା ଅନ୍ୟ କିଏ ଏ'ପରି ଅପୂର୍ବ ମିଳନ ଘଟାଇ ପାରେ ?

ବୀରେନ୍ଦ୍ର—ପାପୀକୁ ମଧ୍ୟ ଏ'ପରି ଭାବେ କିଏ ଉଦ୍ଧାର କରିପାରେ, ପିତଃ ?

ଶାରଦା—ଏ'ପରି ହିଂସା ଶୂନ୍ୟ ପ୍ରତିହିଂସା ମଧ୍ୟ କିଏ ସାଧନ କରି-ପାରେ, ପିତଃ ?

ନନ୍ଦକା—ବୃଥା ବାକ୍ୟାଳାପର ବର୍ତ୍ତମାନ ସମୟ ନୁହେଁ, ଭାଇ । ଏ' ସ୍ଥାନ ତ୍ୟାଗ କରିବା ଆଗେ ଆବଶ୍ୟକ ।

ବାସୁ—ନା, ଜେମାଦେଇ । ମୁଁ ତ୍ୟାଗକରି ପାରିବି ନାହିଁ—ତା' ହେଲେ ଅମ୍ଭମାନଙ୍କର ଉଦ୍ଦେଶ୍ୟ ଏକାବେଳକେ ପଣ୍ଡ ହୋଇ ଯିବ ।

ସାରେନ୍ଦ୍ର—ତେବେ କେମ୍ପଦେଇଙ୍କୁ ପତ୍ର ଦେଇଥିଲେ କ'ଣ ଏ ଶତ୍ରୁ-
ଶିବିରରେ ବନ୍ଦୀଭାବେ କେବଳ ସାକ୍ଷାତ୍ କରିବାକୁ ?

ବାସୁ—ମୋର ସ୍ୱାର୍ଥପାଇଁ କ'ଣ ମୁଁ କେମ୍ପଦେଇଙ୍କୁ ପତ୍ର ଦେଇଥିଲି ?

ନନ୍ଦକା—ତେବେ ଆପଣଙ୍କର ଅଭିପ୍ରାୟ ?

ବାସୁ—ଅଭିପ୍ରାୟ ? ଏହା ପୁଣି ପଚାରୁଛ, କେମ୍ପଦେଇ ? ଏହି
ମହାମାରୀ ଯୁଦ୍ଧ କ'ଣ ଏହିପରି ଭାବେ ଚାଲିଥିବ—ରାଜା
ରାଜରକ୍ତ ଲାଳସାରେ ଧାବିତ ହେଉଥିବେ—ପ୍ରଜା ପ୍ରଜାରକ୍ତ
ଲାଳସାରେ ଧାବିତ ହେଉଥିବେ ? ଭାରତର ପୁଣ୍ୟପୀଠ
ସର୍ବଶ୍ରେଷ୍ଠ ଏହି ଉତ୍କଳଭୂମି କ'ଣ ଗୋଟିଏ ବିଶାଳ ବଧ-
ଭୂମିରେ ପରିଣତ ହୋଇ ରହିଥିବ ?

ନନ୍ଦକା—ଲୁହ ଭାଇ ! ମନୁଷ୍ୟର ଏହି ପାଶବିକ ଭାବକୁ ଉପାୟ
କ'ଣ ? ତାହା ବିରୁଦ୍ଧେ ଦଣ୍ଡାୟମାନ ହେବାର ପ୍ରତ୍ୟକ୍ଷ
ଫଳତ ଅଙ୍ଗେ ଅଙ୍ଗେ ଅନୁଭବ କରୁଛ !

ବାସୁ—ଏହା ବୋଲି କଣ ସତ୍କାର୍ଯ୍ୟରୁ ଏକାବେଳକେ ନିବୃତ୍ତ
ହେବା ଉଚିତ, କେମ୍ପଦେଇ ?—ମୃତ୍ୟୁ ବରଂ—ମୃତ୍ୟୁଠାରୁ
ଅଧିକତର ଯନ୍ତ୍ରଣା ଥାଏ ଯେବେ, ତାହା ମଧ୍ୟ ବରଣୀୟ—
ତଥାପି ମନୁଷ୍ୟର ଏପରି ଦୁର୍ଦ୍ଦଶା ଦର୍ଶନ, ଅସହ୍ୟ ! ଅସହ୍ୟ !
ଆସ କେମ୍ପଦେଇ ! ଶକ୍ତିସୀମା ଅତିକ୍ରମ କରି ଚେଷ୍ଟା କରିବା,
ମନୁଷ୍ୟ ଯାପରି ଦୁର୍ଦ୍ଦଶାଗ୍ରାସରୁ ମୁକ୍ତି ଲାଭ କରିବ—ଯାପରି
ଚିରଶାନ୍ତି ଲାଭ କରିବ ।

ନନ୍ଦକା—ଉପାୟ ?

ବାସୁ—ଉପାୟ ତୁମ୍ଭର ହାତରେ—ତୁମ୍ଭଙ୍କୁହିଁ ସାହସ କରିବାକୁ
ହେବ—ତୁମ୍ଭଙ୍କୁହିଁ ବାଧା ବିଘ୍ନ ଅତିକ୍ରମ କରି ଦୃଢ଼ଭାବେ
ଅଗ୍ରସର ହେବାକୁ ହେବ—ପାରିବ କି ?

ନନ୍ଦକା—ମନ୍ତ୍ରୀଭାଇ ! ଏହି ଯୁଦ୍ଧ ନିବାରଣ ନିମନ୍ତେ ମୋତେ ଯେବେ ପ୍ରାଣଦେବାକୁ ହୁଏ, ତା’ ମଧ୍ୟ ମୁଁ କରିବାକୁ ପ୍ରସ୍ତୁତ ।

ବୀରେନ୍ଦ୍ର—ଅମ୍ଭମାନଙ୍କର ଜୀବନ ଯିବା ପୂର୍ବରୁ କିନ୍ତୁ ତାହା କଦାପି ଘଟିବାକୁ ଦେବୁଁ ନାହିଁ, ଦେମା ଦେଇ !

ଶାରଦା—କଦାପି ନୁହେଁ ।

ବାସୁ—ଜେମାଦେଇଙ୍କ ପ୍ରାଣ ଯେବେ ପଣ ହୁଏ,ତେବେ ଅମ୍ଭମାନଙ୍କର ଏ’ ଯୁଦ୍ଧ ନିବାରଣରେ କି ପ୍ରୟୋଜନ ? ଉଦ୍ଦେଶ୍ୟ ମଧ୍ୟ ସାଧିତ ହେବ କିପରି ?

ନନ୍ଦକା—କ୍ଷମ, ମନ୍ତ୍ରୀଭାଇ ! ସାଧୁ-କାର୍ଯ୍ୟରେ ବିଳମ୍ବ କରିବା କଦାପି ଉଚିତ ନୁହେଁ ।

ବାସୁ—ବର୍ତ୍ତମାନ ଆଉ ସମୟ ନାହିଁ—ଏହିପରି ଲେଖି ରଖିଛୁ, ନେଇ ଯା’ନ୍ତୁ—ପଢ଼ି, ବିବେଚନାକର ଦେଖିବେ, ମୋର ମହାଯୁକ୍ତିସଙ୍ଗତ କି ନୁହେଁ ? ମୋତେ ବନ୍ଦୀ କରି ଯାଅ, ବୀରେନ୍ଦ୍ର !

ଶାରଦା—ପିତା !

ବାସୁ—ବର୍ତ୍ତମାନ ମୋ ପାଇଁ ବୃଥା ଶୋକର ସମୟ ନୁହେଁ, ଶାରଦା ! କାର୍ଯ୍ୟର ସମୟ । ଏହି ଦେବୀଙ୍କ ଉପରେ ଅମ୍ଭ-ମାନଙ୍କର ତାହିଁକି, ସମସ୍ତ ରାଜ୍ୟର ଭାଗ୍ୟ ସମ୍ପୂର୍ଣ୍ଣ ନିର୍ଭର କରୁଛି—ତୁମ୍ଭେମାନେ ତାହାଙ୍କୁ ଉତ୍ସାହ ଦିଅ—ସାହାଯ୍ୟ କର ।

ବୀରେନ୍ଦ୍ର—ହାୟ ! ହାତରେ ପାଇ, ପାଇ ପାରିଲି ନାହିଁ !

ବାସୁ—ଅଧୀର ହେଉଛ, ସାବେନ୍ଦ୍ର ? ତୁମପକ୍ଷେ କ ଏହା ଶୋଭ-ପାଏ ? କାର୍ଯ୍ୟ—କାର୍ଯ୍ୟ—କାର୍ଯ୍ୟ । ଯାଅ, ଅଧିକକ୍ଷଣ ଏଠାରେ ରହିବା ଆଉ ଉଚିତ ନୁହେଁ ।

(ସମସ୍ତଙ୍କର ପ୍ରସ୍ଥାନ)

ଈଶ୍ୱର । ସତେକି ଆଶା ମୋର ପୂର୍ଣ୍ଣ ହେବ ? କ୍ଷତସ୍ଥ ହେବ, ତା' ନ ହେଲେ ଏ' ମଙ୍ଗଳ ସୂଚନା ହୁଅନ୍ତା କାହିଁକି ?—

# ଚତୁର୍ଥ ଦୃଶ୍ୟ

[କକ୍ଷଦ୍ୱାର]

(ଗ୍ରେବର୍ଗଙ୍କର ପ୍ରବେଶ)

ଗ୍ରେବ—କାଲି ସ୍ୱପ୍ନ ଦେଖିଥିଲି, ମା ଜାହ୍ନବୀ ଯେପରି ଅଶ୍ୱାସନା ଦେଉଛନ୍ତି, ଆଜି ଚିନ୍ତା କରନା, ଦୁର୍ଗଦ୍ୱାର ନିଶ୍ଚୟ ଖୋଲିବ'—କାହିଁ ? ଦିନ ଆସି ଚତୁର୍ଥ ଯାମ ଅତିକ୍ରମ କରିବାକୁ ବସିଲାଣି —ଆଜି କେତେବେଳେ ଖୋଲିବ ?—ସ୍ୱପ୍ନ ! ସ୍ୱପ୍ନ ମନର ଭ୍ରାନ୍ତି—ମନର ବିକାର ମାତ୍ର; ତଥାପି କାହିଁକି ସେ ମରୀଚିକା ପଛେ ପଛେ ମନ ଥରକୁ ଥର ଧାଉଁଛି ? ଆଶା ! ଆଶା, କୁହୁକିନୀ ସେ—ତା'ର କୁହୁକରେ ପଡ଼ି ମନୁଷ୍ୟ ଶୂନ୍ୟରେ ମନ୍ଦିର ଗଢ଼େ, ତାହାରି ପ୍ରଲୋଭନରେ ପଡ଼ି ମନୁଷ୍ୟ ଅସାଧ୍ୟ ସାଧନ କରିବାକୁ ମଧ୍ୟ ଧାଇଁଯାଏ । (ଦୂତର ପ୍ରବେଶ) କି ସମ୍ବାଦ ?

ଦୂତ—ମହାରାଜ ! ଦୁର୍ଗଦ୍ୱାର ଖୋଲିବାରତ କୌଣସି ଲକ୍ଷଣ ଦେଖିଲି ନାହିଁ ?

ଗ୍ରେବ—ଅଚ୍ଛା, ତୋର ନିର୍ଦ୍ଦିଷ୍ଟ ସ୍ଥାନକୁ ତୁ ଯା ।

ଦୂତ—ଯେ ଆଜ୍ଞା । (ଦୂତର ପ୍ରସ୍ଥାନ)

ଗ୍ରେବ—ଓଃ । ଗୋଟାଏ ମିଥ୍ୟା-ସ୍ୱପ୍ନରେ ବିଶ୍ୱାସ କରି, ମୁଁ କି ଭ୍ରାନ୍ତ ହୋଇଥିଲି ? ଯାହା, ମୋତେ କାଲି ସକାଳେ ଯେ କୌଣସି ମତେ ଛାଉଣି ଉଠାଇ ନେବାକୁ ହେବ । ଏଣେ ସୈନ୍ୟମାନେ ଖାଦ୍ୟାଭାବରେ ମୃତପ୍ରାୟ—ଅଜି ଖାଦ୍ୟାହରଣରେ ମଧ୍ୟ କୌଣସି ସମ୍ଭାବନା ନାହିଁ; ତେଣେ ମାତାଙ୍କର ଅମୋଘ ଆଦେଶପତ୍ର । ମାତା ସ୍ୱେଚ୍ଛାରେ ହେଉ, ବା ଅପର କାହାରି ପରାମର୍ଶରେ

ହେଉ, ଯେତେବେଳେ ଫେର ଯିବାକୁ ଆଦେଶ ଦେଇଛନ୍ତି, ସେତେବେଳେ ଫେର ଯିବାକୁ ମୁଁ ବାଧ୍ୟ—ହାୟ ! ଜୟ ଗୌରବ ଅର୍ଜନ ନ କରି ମୋତେ ଫେରିବାକୁ ହେଲା ! ବିଶ୍ୱାସ ଘାତକ ! ଓଃ ହୋଃ, ଯୁଦ୍ଧ—ବୃଥା ଚିନ୍ତାରେ ମସ୍ତିଷ୍କ ଉତ୍ତପ୍ତ କରିବା କିସ୍ପ ପ୍ରୟୋଜନ ! ଯାଏଁ ରଜନୀର ଶେଷଯାମଟିକୁ ଶଯ୍ୟାରେ ଟିକିଏ କଟାଇ ଦଏଁ । (ଗୈରବଗଙ୍ଗଙ୍କର ପ୍ରସ୍ଥାନ)

(ନନ୍ଦିକାର ପ୍ରବେଶ)

ନନ୍ଦିକା—ଏହିତ ଗୈରବଗଙ୍ଗଙ୍କର ଶିବିର ! କାହାନ୍ତି ସେ ? ବୋଧହୁଏ ନିଦ୍ରା ଯାଇଥିବେ । ଉଠ, ବୀର ! ଅଜ ନିଦ୍ରା କାହିଁକି ? ଭାଗ୍ୟ ତୁମ୍ଭର ପ୍ରସନ୍ନ ହୋଇଛି, ଉତ୍କଳର ଭାଗ୍ୟବିଧାତାଙ୍କର ଭାଗ୍ୟମଣି ଆଜି ତୁମ୍ଭ କରେ !—ମୁଁ କି ଠିକ୍ କାମ କରୁଛି ? ପିତାଙ୍କର ବିନାନୁମତିରେ ଯେଉଁ ଅସିବା—ତାଙ୍କର ନିଦ୍ରା ଅବସ୍ଥାରେ ପୁଣି ଲୁଚାଇ ଅଣିବା—ଏହା କଣ ଚୋରି ନୁହେଁ ? ତେବେ କଣ ମୁଁ ଚୋରଣୀ ହେଲି ?—ମୋର ଉଦ୍ଦେଶ୍ୟତ ଏହି ମଣି ନୁହେଁ, କିମ୍ବା ଏହା ସାହାଯ୍ୟରେ କାମ-ଲାଳସା-ତୃପ୍ତି-ସାଧନ ନୁହେଁ ? ମୋର ଉଦ୍ଦେଶ୍ୟ ଯେ ଅନ୍ୟରୂପ—ରାଜା ରାଜା ମଧ୍ୟରେ ଶତ୍ରୁତା ନିବାରଣ—ଯୋଦ୍ଧା ଯୋଦ୍ଧା ମଧ୍ୟରେ ମୈତ୍ରୀ ସ୍ଥାପନ । ପିତାଙ୍କୁ କହି ଅଣିଥିଲେ ତ ଭଲ ହୋଇଥାନ୍ତା—ଅନୁନୟ ବିନୟ ପୂର୍ବକ ଯାଚଞ୍ଚା କରିଥିଲେ ତ ମୋର ମନ ସ୍କାମନା ସେ ପୂର୍ଣ୍ଣକରିଥାନ୍ତେ ? ଅସମ୍ଭବ—ଅସମ୍ଭବ—ସେ ନିଶ୍ଚୟ ବାତୁଳ ବୋଲି ମୋତେ ଉପେକ୍ଷା କରିଥାନ୍ତେ । ଅଚ୍ଛା, ଏହି ମଣି ନେଇ ମୁଁ ଶତ୍ରୁକୁ ଦେବି, ସେ ଯେବେ ବିଶ୍ୱାସ ଘାତକତା କରେ ? ତେବେ ରାଜ୍ୟର ଦଶା କଣ ହେବ ?

ପିତାଙ୍କର ଦଶା ? (ଭାବି) ଛିଃ, ବିଶ୍ୱାସଘାତକତାର ଆଶଙ୍କା ଅସମ୍ଭବ । ଏ' ଯୁଦ୍ଧରେ ମୋର ବିବାହ ଘେନି—ମୁଁ ଯଦି ନିଜେ ନିଜକୁ ଅର୍ପଣ କରେଁ, ତାହା ହେଲେ କୌଣସି ବିବାଦ ବହିବାର କଥା ନୁହେ,—ଅଧିକ ମଧ୍ୟ ଆମ୍ଭେମାନେ ଯେ ପରସ୍ପର ପ୍ରତି ଆକୃଷ୍ଟ, ତା' ପୁଷ୍ପବନରେ ପ୍ରଥମ ଦର୍ଶନ-ବେଳେ, ପରସ୍ପରକୁ ଚୋରାଇ ଚୋରାଇ ଚାହିଁବାରେ ବେଶ୍ ପ୍ରମାଣିତ ହୋଇଛି—ତେବେ, ଆଶା ମୋର କଦାପି ଦୁରାଶା ହୋଇ ନ ପାରେ । ଆଉ ଗୋଟିଏ କଥା, ମଣିଭା ନ ଆଣି ଏ କାର୍ଯ୍ୟ କରିଥିଲେ ତ ଭଲ ହୋଇଥାନ୍ତା । ସେ ଯେପରି କଥାରେ କେବଳ ବିଶ୍ୱାସ ନ କରନ୍ତି—ସେ ବିଶ୍ୱାସ କଲେ ମଧ୍ୟ, ପିତା ଯେବେ ଶତ୍ରୁତା ତ୍ୟାଗ ନ କରନ୍ତି ?—ମୁଁ ଆପଣାକୁ ଅର୍ପଣ କରିବା ପରେ କ'ଣ ଜାମାତା ସଙ୍ଗେ ସେ ଯୁଦ୍ଧ କରନ୍ତେ ? ଏ'କଥା ତାଙ୍କ ପକ୍ଷେ କିଛି ବିଚିତ୍ର ନୁହେ, ଯେମନ୍ତ ସେ ମୋ ପ୍ରତି ଅକୃଷ୍ଟ । ମଣିଛଡ଼ା ହେଲେ କଣ ବର୍ତ୍ତମାନ ଯୁଦ୍ଧ କରିବାର ସମ୍ଭାବନା ଅଛି ? ଇଚ୍ଛା ଥିଲେ ମଧ୍ୟ କ୍ଷେପ୍ତାନା—ଉପାୟହୀନା । ହେ ଈଶ୍ୱର । ମୋତେ ଶକ୍ତି ଦିଅନ୍ତୁ—ମୁଁ ନିଜ ପାଇଁ କିଛି କରୁ ନାହିଁ—ଯାହା କରୁଛି, ରାଜାଙ୍କ ସକାଶେ, ପ୍ରଜାଙ୍କ ସକାଶେ, ରାଜ୍ୟର ସକାଶେ । କାହାନ୍ତି ଚଙ୍ଗଦେବ ? ଏହାତ ସେହି ପ୍ରଶସ୍ତ ଶିବିର, ନା ଏହାଠାରୁ ଅନ୍ୟ କୌଣସି ଅଧିକତର ପ୍ରଶସ୍ତ ଶିବିର ଅଛି ?

(ଅନ୍ୱେଷଣ କରୁ କରୁ ପ୍ରସ୍ଥାନ)

(ଚୋରଗଙ୍ଗଦେବଙ୍କର ପ୍ରବେଶ)

ଚୋର—ନା, ଆଉ ନିଦ୍ରା ହେବ ନାହିଁ—ପ୍ରଭାତ ଦେଖା ଦେଲାଣି, ଅନ୍ଧକାର ପଳାଇବାକୁ ବସିଲାଣି—ପ୍ରକୃତରାଣୀ, ମୃଦୁ ହାସ୍ୟ ।

କରିଉଠିଲେଣି; ମାତ୍ର ମୋ ହୃଦୟ ଗାଢ଼ ଅମାନିଶାରେ ଯେମନ୍ତ ଅଚ୍ଛନ୍ନ ହୋଇ ଆସୁଛି—ସୁଖ ଯେମନ୍ତ ଚିର ରାହୁଗ୍ରାସରେ ଶଶୀ ତୁଲ୍ୟ ଲୁପ୍ତ ହୋଇଯାଉଛି। ଦକ୍ଷିଣା ପବନ ବୋହିବାକୁ ଲାଗିଲାଣି—ପକ୍ଷୀ ପ୍ରଭୃତି ଗାହିଲାଣି—ଫୁଲ୍ଲଲତା ଆନନ୍ଦରେ ନୃତ୍ୟ କରିଉଠିଲେଣି; କିନ୍ତୁ ମୋ ହୃଦୟ ବିଷଜ୍ୱାଳାରେ ଯେମନ୍ତ ଜ୍ୱଳି ଯାଉଛି—ସର୍ବାଙ୍ଗ ଯେମନ୍ତ ପୋଡ଼ି ଜାରଖାର ହୋଇଯାଉଛି—ହାୟ ! ଏତେ କ୍ଲେଶ—ଏତେ ଶ୍ରମ ପରେ ମୋତେ ଲକ୍ଷହରା ହୋଇ ସ୍ୱଦେଶକୁ ଫେରିବାକୁ ହେଲା—ଉଃ ! ଏହାଠାରୁ ଯେ ମୃତ୍ୟୁ ଶ୍ରେୟସ୍କର !

[ ଖୋଜା ୨ ନନ୍ଦକାର ପୁନଃ ପ୍ରବେଶ—ହଠାତ୍ ତୈମୁରଙ୍କୁ ଦେଖି ଛିଡ଼ାହେବା ]

ନନ୍ଦକା—(ସ୍ୱଗତ) ଏହି ତ ସେହି ବୀର ପ୍ରବୀଣ। ହୃଦୟ ! ଦମ୍ଭ ଧର । ଈଶ୍ୱର ! ଈଶ୍ୱର ! ସହାୟ ହୁଅନ୍ତୁ ।

ତୈମୁର—ଏ କିଏ ? ଏ କି ଜ୍ୟୋତିଃପୁଞ୍ଜରେ ଶିବିରର ଅନ୍ଧକାର ବିଦୂରିତ ହୋଇଗଲା ? କିପାଇଁ ଛବିତ ଏ ପର୍ଯ୍ୟନ୍ତ ଆକାଶରେ ପ୍ରକଟିତ ହୋଇନାହିଁ ? ଏ କି ମୂର୍ତ୍ତି ? ଏହା କି ପ୍ରକୃତ, ନା ସ୍ୱପ୍ନ ?

ନନ୍ଦକା—ମହାରାଜ !

ତୈମୁର—'ମହାରାଜ' ବୋଲି ଯେ ଡାକୁଛି—କଥା କହୁଛି । କିନ୍ତୁ ତେବେ ସ୍ୱପ୍ନ ନୁହେଁ—କିଏ ତୁମ୍ଭେ ? ଦେବୀ ନା ମାନବୀ ?

ନନ୍ଦକା—ମୁଁ ଗୋଟିଏ ଅବଳା ବାଳିକା, ମହାରାଜ !

ତୈମୁର—ଏପରି ସମୟରେ ଶତ୍ରୁ ଶିବିରକୁ ଆସିବାର କାରଣ ?—ତୁମ୍ଭର ଉଦ୍ଦେଶ୍ୟ କଅଣ ?

ନନ୍ଦକା—ଅବଶ୍ୟ ସୁ-ଉଦ୍ଦେଶ୍ୟ, ମହାରାଜ !

ତୈମୁର—ସୁ-ଉଦ୍ଦେଶ୍ୟ ?—(ନିରୀକ୍ଷଣ କରି) କିଏ ଅପଣ ? ଅପଣ ନା ରାଜ ନନ୍ଦନୀ ? ଆପଣଙ୍କର ନାମ ନା ନନ୍ଦିକା ? ଅପଣ ଏଠାକୁ ଗୋପନରେ ଅସିଛନ୍ତି କାହିଁକି ? କହନ୍ତୁ, ଅପଣଙ୍କର କି ଉଦ୍ଦେଶ୍ୟ ?

ନନ୍ଦିକା—ଉଭୟ ପକ୍ଷର ମିଳନବିଧାନ ମୋର ଉଦ୍ଦେଶ୍ୟ ମହାରାଜ ।

ତୈମୁର—ଯୁଦ୍ଧ କ୍ଷେତ୍ରରେ ଡ ? ତା'ହେଲେ,ପିତା ଆପଣଙ୍କର ନ ଆସି, ଆପଣଙ୍କୁ ପଠାଇ ଦେଲେ କାହିଁକି ? ସେ କ'ଣ ମନେ କରନ୍ତି, ମୁଁ ଏତେ ଦୁର୍ବଳ ଯେ ନାରୀର ସାମାନ୍ୟ ରୂପରେ ଅକୃଷ୍ଟ ହୋଇ ନିଜେ ପରାଜୟ ସ୍ୱୀକାର କରିବ—ଦୁର୍ଗାବରୋଧ ତ୍ୟାଗ କରି ଚାଲିଯିବ ? ଅସମ୍ଭବ—ଅସମ୍ଭବ ।

ନନ୍ଦିକା—ମହାରାଜ ! ସିଂହତୁଲ୍ୟ ସବଳ ଓ ପରାକ୍ରାନ୍ତ ହୋଇ ଦୁର୍ବଳ ଶିଶୁ ତୁଲ୍ୟ ଏତେ ଅସ୍ଥିର ଓ ଅଧୀର ଅପଣ ?

ତୈମୁର—ଅସ୍ଥିର ଓ ଅଧୀର କାହିଁପାଇଁ, ଅଯେ ? ଅଜକୁ ପ୍ରାୟ ଏକ ପକ୍ଷ ଅତୀତ ହେବାକୁ ବସିଲା—ଆଜ କେତେ କାଳ ଅମ୍ଭେମାନେ, ବିନା ଭୋଜନରେ, ବିନା ନିଦ୍ରାରେ ଅଳସ୍ୟ ଓ ଜହ୍ଣା ସହିତ ଚିତୋର ଦଳର ବଳ ମୁଖକୁ ଅନାଇ ବସି ରହିଥିବୁ ?

ନନ୍ଦିକା—ଯେବେ ଜାଣନ୍ତି, ମହାରାଜ । ସେମାନେ ଚିତୋରଦଳ—ପ୍ରାଣ ଭୟରେ ଗର୍ତ୍ତରେ ଲୁଚି ରହିଛନ୍ତି, ତେବେ ସିଂହ-ପରାକ୍ରାନ୍ତ ଅପଣମାନେ ଏତେ ତାପ କ୍ଲେଶ ସହ୍ୟ କରିବାର କି ପ୍ରୟୋଜନ ?

ତୈମୁର—ଖୁବ୍ ପ୍ରୟୋଜନ ଅଛି, ଅଯେ । ସେମାନେ ନିଜ ମୁଖରେ ଥରେ ନିଜକୁ 'ଚିତୋର' 'ଭୀରୁ' ବୋଲି ସ୍ୱୀକାର କରନ୍ତୁ; ତାହା ଶୁଣି ଅମ୍ଭେମାନେ ସାନନ୍ଦେ ଗୃହାଭିମୁଖେ ପ୍ରସ୍ଥାନ କରିବୁ ।

ନନ୍ଦଙ୍କା—ଅଚ୍ଛା ଧରନ୍ତୁ, ସେମାନେ ସ୍ୱୀକାର କଲେ, ସେଥିରେ ଆପଣଙ୍କର ଲାଭ ?

ଭୈରବ—ଲାଭ ଛଡ଼ା ଆପଣ ନାରୀ ହୋଇ କଣ ବୁଝିବେ ? ନର ତା'ର ଅର୍ଥ ବୁଝେ—ବୀର, ତାର ମାଧୁରୀ ଆସ୍ୱାଦନ କରେ । ଯାଉ, କହନ୍ତୁ କି ଉଦ୍ଦେଶ୍ୟରେ ଆପଣଙ୍କର ଏଠାକୁ ଆଗମନ ?

ନନ୍ଦଙ୍କା—ମହାରାଜ ! ଆପଣଙ୍କର ଶକ୍ତି ତାର କାରଣ ଯେବେ ଏହି ସ୍ଥାନର ମାଟିର ଦେହ ହୁଏ—ଆପଣମାନଙ୍କର ଯୁଦ୍ଧର କାରଣ ଯେବେ ସୃଷ୍ଟିର ଏହି ଦୋଷଯୁକ୍ତ ଜୀବ ହୁଏ, ଯାହାପାଇଁ ଲକ୍ଷ ଲକ୍ଷ ନର ଆଜି ପତଙ୍ଗପରି ସମରାନଳରେ ପ୍ରାଣ ବିସର୍ଜନ କରୁଛନ୍ତି—ଯାହାପାଇଁ ଶତଶତ ନାରୀ ଆଜି ହେସ୍ତ ବୈଧବ୍ୟ ଜୀବନ ବହନ କରି ଜୀବନ୍ମୃତ୍ୟୁ ଯାତନା ଅନୁଭବ କରୁଛନ୍ତି, ତେବେ ସେହି ପାପିଷ୍ଠା, ହତଭାଗିନୀ ଆଜି ସ୍ୱତଃ ପ୍ରବୃତ୍ତ ହୋଇ ଆପଣଙ୍କୁ ଶ୍ରୀପଦ୍ମରେ ଅର୍ପଣ କରୁଛି ।

(ଭୈରବଙ୍କ ପଦାଦେଶରେ ବିନୀତ ଭାବେ ଜାନୁପାତ ହେବା)

ଭୈରବ—( ହୃଦକୁ ଧରିଯାଇ, ସବିସ୍ମୟେ ଚାହିଁ ରହିବା )

ନନ୍ଦଙ୍କା—ବିଶ୍ୱାସ ଯେବେ ନ ହୁଏ, ତା'ର ନିଦର୍ଶନ ସ୍ୱରୂପ ଏହି ଅମୂଲ୍ୟ ମଣିଟି ଅର୍ପଣ କରୁଛି, ଦେଖନ୍ତୁ । ଜାଣନ୍ତି କି ମହାରାଜା ଏହି ମଣିଟି ପିତାଙ୍କର କେତେଦୂର ଆଦରଣୀୟ ? ଏହା ତାଙ୍କର ହୃଦୟର ମଣି—ପ୍ରାଣର ସର୍ବସ୍ୱ—ଏଥିରେ ତାଙ୍କର, ତାଙ୍କର ତାହାଙ୍କ ସମଗ୍ର ରାଜ୍ୟର ଶୁଭାଶୁଭ ନିହିତ ଅଛି; ଏହି ଜଗଦମ୍ବା ଦତ୍ତ ମଣିଯୋଗୁଁ ଆଜି ଆପଣଙ୍କପରି ବୀର ମଧ୍ୟ ଦୁର୍ଗ ମଧ୍ୟରେ ପ୍ରବେଶ କରିବାକୁ ଅକ୍ଷମ । ବର୍ତ୍ତମାନ ଦୁର୍ଗ ମଧ୍ୟରୁ ମଣିଟି ଚାଲି ଆସିଛି, ସଙ୍ଗେ ସଙ୍ଗେ ଦୁର୍ଗର ସମସ୍ତ ଶକ୍ତି ମଧ୍ୟ ଚାଲି ଆସିଛି--ମହାରାଜ ।

ମହାରାଜ ! ରାଜ୍ୟରେ ମହାବିପଦ ବର୍ତ୍ତମାନ ଉପସ୍ଥିତ—ଏ’ ବିପଦରେ ଆପଣହିଁ ଏକମାତ୍ର କର୍ଣ୍ଣଧାର । ଅନୁନୟ କରୁଛି, ମହାରାଜ ! ବିବାଦ ବିସମ୍ବାଦ ଭୁଲିଯାନ୍ତୁ—ଶତ୍ରୁତା ତ୍ୟାଗ କରନ୍ତୁ—ରାଜା ରାଜା ମଧ୍ୟରେ ସବୁ ପାର୍ଥକ୍ୟ ଘୁଞ୍ଚିଯାଉ—ପିତା ପୁତ୍ର ମଧ୍ୟରେ ଅପୂର୍ବ ସ୍ନେହଭାବ ଜାଗିଉଠୁ ।

ଭୈରବ—ଥାଉ, ଥାଉ । ଅଉ ଶୁଣାଇ କର୍ଣ୍ଣ ଅପବିତ୍ର କର ନା’ନା । ଅରେ ରେ କୁଳଟା ! ଏଥି କରେ ଶାନ୍ତି ତୋର ? ସାମାନ୍ୟ କାମଲାଳସା ତୃପ୍ତି ନିମନ୍ତେ ଏଡ଼େ ଗର୍ହିତ ଆଚରଣ ? କନ୍ୟା ହୋଇ ପିତୃ-ହତ୍ୟା କରିବାକୁ ଉଦ୍ୟତ, ପ୍ରଜାହୋଇ ରାଜହତ୍ୟା କରିବାକୁ ଉଦ୍ୟତ, ଦେଶର ଅନ୍ନ ଜଳରେ ପ୍ରତିପାଳିତ ହୋଇ ଦେଶଦ୍ରୋହୀ ହେବାକୁ ଅକୁଣ୍ଠିତ । ଓଃ, ତୋ’ପ୍ରତି ମୋର କି ଭ୍ରାନ୍ତ ଧାରଣା ଥିଲା ? ବିଦୁଷୀ ବୋଲି ତୋତେ ଯେ ଦିନେ ଭାରି ପ୍ରଶଂସା କରି ଥିଲି—ଦେବୀ ବୋଲି ମନେ ମନେ ସ୍ତବ ସ୍ତୁତି ପର୍ଯ୍ୟନ୍ତ କରିଥିଲି । ଓଃ, କି ଭୂଷ୍ଣା ତୁହି । ସୌରଭମୟ କୁସୁମ ମଧ୍ୟରେ କି କାଳନାଗିନୀ ତୁହି ।

ନନ୍ଦିତା—ମହାରାଜ ! ବୃଥାରେ କଳଙ୍କ ଅର୍ପଣ କରି ଅଭାଗୀକୁ କଳଙ୍କିତା କରନ୍ତୁ ନାହିଁ; ଯେବେ ଏ ଅଧମାର ସାମାନ୍ୟ କାମ ଲାଳସା ଥା’ନ୍ତା—ଯେବେ ଏ ଅଧମାର ବିବାହ ମୁଖ୍ୟ ଉଦ୍ଦେଶ୍ୟ ହୋଇଥା’ନ୍ତା, ତେବେ ସେ ଏହି ଯୁଦ୍ଧ ହେବା ପୂର୍ବରୁ—ରାଜା ଓ ରାଜ୍ୟକୁ ସଙ୍କଟାପନ୍ନ କରିବା ପୂର୍ବରୁ କର୍ଣ୍ଣାଟରେ ଉପସ୍ଥିତ ହୋଇ ପାରିଥାନ୍ତା—ଭୈରବଙ୍କୁ ଶତ୍ରୁରୂପେ ଦେଖିବା ପୂର୍ବରୁ ନିଜର ଅନ୍ତରଙ୍ଗ ବନ୍ଧୁ କରିନେଇ ପାରିଥାନ୍ତା । ଏ’ ଅଧମାକୁ ବିଶ୍ୱାସ କରନ୍ତୁ ମହାରାଜ ! ଯେବେ ଏ’ ଅଧମାକୁ କଳୁଷିତ ପ୍ରେମ ଦୃଷ୍ଟିରେ—

ଗୈରିବ—ସଂଯତ କର ରସନା ତୋର, କଳଙ୍କିନୀ ! ମନେ କରିଛୁକି, ପ୍ରଥମ ଦୃଷ୍ଟିରେ କଣ୍ଠିତ ଅସଂଯତ ହୋଇଥିଲି ବୋଲି ସଂଯମଶକ୍ତି ମୋର ଏକାବେଳକେ ଲୋପଯାଇଛି ? କଦାପି;ତା' ସ୍ୱପ୍ନରେ ସୁଦ୍ଧା ମନେ କରନାହିଁ, ପାପିୟସି । ବୀରର ପ୍ରକୃତ ବୀରତ୍ୱ ଯେ ସେହିଠାରେ । ଯା'ର ସେ ଶକ୍ତି ନାହିଁ, ଶରୀରର ବଳ ତାର ଅକାରଣ ! ଶରୀରର ବଳ ଅସୁରର ବଳ ମାତ୍ର ! ଅରେ ରେ କୁଳଟା ! ଆଜକୁ ମାସାବଧି କାଳ ବନା ନିଦ୍ରାରେ, ବନା ଭୋଜନରେ, ସମସ୍ତ ସୁଖ ବିସର୍ଜନ କରି ଯୁଝିକଲି—ଉଦ୍ଦେଶ୍ୟ କଣ, କାମଲାଳସା-ତୃପ୍ତି ସାଧନ ? ଗୋଟିଏ ବାଳିକାର ସୌନ୍ଦର୍ଯ୍ୟ ଉପଭୋଗ ? ଛିଃ-ଛିଃ, ରାଜନନ୍ଦିନୀ ! ବୀରବାଳା ହୋଇ ଏ' ଭାବ ମନରେ ତୋ'ର ସ୍ଥାନ ଦେବାକୁ ସକ୍ଷମା ହେଲୁ ? ଧିକ ତୋତେ ପାପିୟସି !

ନନ୍ଦିକା—କର୍ଣ୍ଣ ! ଏ' କ'ଣ ଶୁଣୁଛୁ ? ହୃଦୟ ! ଏ' କ'ଣ ଅନୁଭବ କରୁଛୁ ?

ଗୈରିବ—କାନ୍ଥ ଭୟ ନାହିଁ, ପାପିୟସି ! ତୁହି ତୋର ଚିତ୍ତକୁ ଏହିକ୍ଷଣି ସାନନ୍ଦେ ଦେଇ ପାରୁ—ଗୈରିବଙ୍ଗ ଏତେ ନୀଚମନା ନୁହେଁ, ଯେ ସାମାନ୍ୟ ଗୋଟାଏ ନାରୀ ସଙ୍ଗେ ବିଶ୍ୱାସଘାତକତା କରିବାକୁ ଅଗ୍ରସର ହେବ ! ତୁ ତୋର ପିତାର ଅଜ୍ଞାତସାରେ ଅନାୟାସେ ଯଥାସ୍ଥାନରେ ଏହି ଅମୂଲ୍ୟ ଦ୍ରବ୍ୟଟି ରଖି ଦେଇ ନିଶ୍ଚିନ୍ତା ହୋଇପାରୁ । ମୁଁ ଚାହେଁନା ତୋଟିଏ କାମୁକା ସାହାଯ୍ୟରେ ମୋର ଉଦ୍ଦେଶ୍ୟ ସାଧନ କରିବାକୁ । ସାହସୀ ଯେବେ ତୋ'ର ପିତା, ନିଜେ ସେ ଦୁର୍ଗଦ୍ୱାର ଖୋଲି ବାହାରନ୍ତୁ—ମୁଁ ଚାହେଁ ନ୍ୟାଯ୍ୟ ରଣ-ନ୍ୟାଯ୍ୟ ସମର !

ନନ୍ଦକ—ମହାରାଜ ! ଏତେ ମହତ୍ ହୃଦୟ ଯେବେ ଅପଣ, ଏ' ଦାସୀସ୍ନତ ଅନ୍ୟାୟ ବାକ୍ୟର ଦଣ୍ଡନ୍ତୁ ନାହିଁ—ବିବାହ ଯେବେ ମୁଖ୍ୟ ଉଦ୍ଦେଶ୍ୟ ନ ହୋଇ, କେବଳ ଯୁଦ୍ଧ ମୁଖ୍ୟ ଉଦ୍ଦେଶ୍ୟ ହୋଇଥାଏ, ତେବେ ହେ ଅସୁରଙ୍କ ଲାଳସା ତ୍ୟାଗ କରନ୍ତୁ, ବୃଥା ଧ୍ୱଂସରୁ ରାଜ୍ୟ ରକ୍ଷା କରନ୍ତୁ !

ଟୈ୍ରବ—ମୋତେ ଏହି ଅନୁରୋଧ କରିବା ଠାରୁ ପିତାଙ୍କୁ କଲେକ ଭଲ ହୁଅନ୍ତା ?

ନନ୍ଦକା—ଠିକ୍ କଥା । କିନ୍ତୁ, ପିତାଙ୍କୁ ଏ'ପାପ ମୁଖ ଦେଖାଇବ କିପରି ? ସେ ମନେ କରିବେ କ'ଣ ? ସେ କ'ଣ ଜାଣି ପାରିବେଣି ? ନା, ନା, ବର୍ତ୍ତମାନ ସୁଦ୍ଧା ସମୟ ଅଛି—ସେ ଶୋଇଥିବେ ।

( ନନ୍ଦକା ପ୍ରସ୍ଥାନୋଦ୍ୟତା ଓ ଦୂତର ବେଗେ ପ୍ରବେଶ )

ଦୂତ—ମହାରାଜ ! ଦୁର୍ଗ ମଧ୍ୟରେ ଚହଳ ପଡ଼ି ଗଲାଣି—ଦୁର୍ଗଦ୍ୱାର ମଧ୍ୟ ଖୋଲିଛି—ସୈନ୍ୟମାନେ ଆଦେଶ ମାତ୍ର ଅପେକ୍ଷା କରୁଛନ୍ତି ।

ନନ୍ଦକା—ଜଣା ପଡ଼ୁଛି ? ଅଉ ରକ୍ଷା ନାହିଁ—ଓଃ, ହୋଃ (ପତନ)

ଟୈ୍ରବ—ଦୂତ ! ଏହି ଦ୍ରବ୍ୟ ସହିତ ( ମଣିଦେଇ ) ଏହି ନାରୀଙ୍କୁ ଶିବିକାରୋହଣ କରାଇ ସସମ୍ମାନେ ସୁବର୍ଣ୍ଣ କେଶରୀଙ୍କର ନିକଟକୁ ନେଇ ଯାଅ—ମୁଁ ଖଣ୍ଡେ ପତ୍ର ଦେଉଛି, ତାଙ୍କୁ ଦେବ—ଉତ୍ତର ଅଣିଲେ, ଅସୁର ବାହିନୀରେ ଅମ୍ଭେ ଅଗ୍ରସର ହେବା; ତତ୍ ପୂର୍ବରୁ ଦୁର୍ଗ ମଧ୍ୟରେ ପ୍ରବେଶ କରିବା ଦୂରେ ଥାଉ, ଦୁର୍ଗଅଡ଼େ କେହି ପଦେ ସୁଦ୍ଧା ଅଗ୍ରସର ହୋଇ ପାରିବ ନାହିଁ । ତୁମ୍ଭେ ଶିବିକାର ଅୟୋଜନ ଶୀଘ୍ର କର—ମୁଁ ପତ୍ର ଲେଖି ଦେଉଛି । ( ଉଭୟଙ୍କର ବିପରୀତ ଦିଗରେ ପ୍ରସ୍ଥାନ )

ନନ୍ଦକ।—( ସ୍ୱଗତ ) ଜାଗ୍ରତ ହେବାର ସମୟ ଏ' ନୁହେଁ—ବର୍ତ୍ତମାନ ଯୁଦ୍ଧ ସମୟ ଅଛି—ପିତାଙ୍କୁ ସତ୍ୟ କଥା କହିଲେ, ଉଦ୍ଦେଶ୍ୟ ଯଦି ସଫଳ ହୁଏ—ମୋତେ କଳଙ୍କିନୀ ଦୋଷ ଅର୍ପଣ କରିବେ ? ରାଜ୍ୟମଧ୍ୟ ନିନ୍ଦା ହେବ ? କ୍ଷତି କଣ ? ମୁଁ ଯେବେ ସାମାନ୍ୟ ନିନ୍ଦା ବା କଳଙ୍କ ବିନିମୟରେ ଏହି ମହାମାରୀ ଯୁଦ୍ଧ ବନ୍ଦ କରି ପାରେଁ—ସ୍ୱରାଜ୍ୟର ମଙ୍ଗଳ ସାଧନ କରିପାରେଁ— ତେବେ ମୋର ଖେଦ କାହିଁକି ? ସେ'ଠାରୁ କି' ଆଉ ଧନ୍ୟ ? ମାତ ପିତା ଯେବେ ସ୍ନେହଦୃଷ୍ଟିରେ ମୋତେ ନ ଦେଖନ୍ତି—ମୋ କଥାରେ କର୍ଣ୍ଣପାତ ନ କରି ଯୁଦ୍ଧରୁ ସ୍ଥଗିତ ନ ହୁଅନ୍ତି—ତେବେ ଉପାୟ—ଉପାୟ କଣ ? କାହିଁ ଅଛି, ମନ୍ତ୍ରୀଭାଇ ! କହି ଦିଅ କି ଉପାୟ କରିବି ?

( ବ୍ୟଥିତ-ହେବା )

---

ଡ୍ରପ

## ପ୍ରଥମ ଦୃଶ୍ୟ

[ ଦୁର୍ଗାଭ୍ୟନ୍ତର—ଶାରଦା ଓ ବୀରେନ୍ଦ୍ର ଉପବିଷ୍ଟ ]

ଶାରଦା—ରାତ୍ର ଭିତରେ ଶତ୍ରୁ ଛାଉଣି ଉଠାଇ ନେଇ ଚାଲିଯିବେ ବୋଲି କହୁଥିଲେ—କାହିଁ ?—ଖବର ମାଡ଼ି ଆସିଲାଣି, ଗୋଟିଏବି ତମ୍ବୁ ଖସା ହେବାର ଲକ୍ଷଣତ ଦେଖୁନାହିଁ ?

ବୀରେନ୍ଦ୍ର—ଗୁପ୍ତଚର ବୋଧହୁଏ ଭୁଲ କହୁଛି—କିମ୍ବା ମୋର ଶୁଣିବାକୁ ଭୁଲ ହୋଇଥିବ—ଆଜ ରାତ୍ରରେ ହୋଇପାରେ ?— ଯାହା ହେଉ ଶତ୍ରୁ ଯେ ଅଚିରକାଳରେ ଦୁର୍ଗାବରୋଧ ତ୍ୟାଗ କରିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ—ଖାଦ୍ୟାଭାବ କି ଭୟ ଅଭାବ ?

ଶାରଦା—ସମ୍ରାଟଙ୍କର ଏ'ପର୍ଯ୍ୟନ୍ତ ଦେଖା ନାହିଁ କାହିଁକି ? ଆମକୁ ଖୁବ୍ ଭୋରରୁ ଆସିବାକୁ କହିଦେଇ—ରାତ୍ର ଥାଉଁ ଥାଉଁ ଯେବେ ହୁଏତ, ଭଲ—ଏବେ କାହାନ୍ତି ? ଏ ପର୍ଯ୍ୟନ୍ତ ନିଜର ବି ଦେଖା ନାହିଁ ।

ବୀରେନ୍ଦ୍ର—ତୁମେ ଯେ ଏତେବେଳକେ ଅସମ୍ଭାଳ,—ଟିକାଏ ବେଶି ବେଳଯାଏ ଶୋଇ ପଡ଼ିଥିବେ, କିମ୍ବା ଅନ୍ୟ କୌଣସି କାମରେ ଲାଗି ଯାଇଥିବେ—ତେଣୁ ବିଳମ୍ବ ହେଉଥିବ—ଏଥିରେ ଏତେ ଉଚ୍ଛନ୍ନ ? ଆମେତ ଏମିତ କିଛି ବେଶିବେଳ ହେଲା ଆସି ନାହୁଁ ।

ଶାରଦା—ତୁମେ ସମ୍ରାଟଙ୍କର କଥା ଜାଣ ନାହିଁ ବୋଲି ସେପରି କହୁଛ । ସେ ଠିକ୍ ସମୟରେ ଠିକ୍ କାର୍ଯ୍ୟ କରିଥାନ୍ତି—ଆଜି ଏପରି ବ୍ୟତିକ୍ରମ କାହିଁକି ? ଏହା ତାଙ୍କର ଜୀବନରେ ପ୍ରଥମ ବୋଲି ମୋର ମନେ ହେଉଛି—ମୋର ଭାରି ଭୟ ହେଉଛି, ସମ୍ରାଟଙ୍କର କୌଣସି ଅସୁସ୍ଥତା ଘଟି ନାହିଁତ ? ତା' ହୋଇଥିଲେ, ଏଠାକୁ କାହାରିକୁ ହେଲେ ପଠାଇଥାନ୍ତେ ନିଶ୍ଚୟ ।

ବୀରେନ୍ଦ୍ର—ତୁମେ ସ୍ତ୍ରୀଲୋକମାନେ ତିଳକୁ ତରାଟର ତାଳ କରି ବସ—କିଏ ଟିକିଏ ଅଳ୍ପ ଅଳ୍ପ ବିଳମ୍ବ ହେଲା ତ କହିବ, ସେ ଆଜି ଇହଧାମରେ ନାହିଁ—ତୁମ୍ଭେମାନେ ଏକ ବଚନ ସୃଷ୍ଟି ।

ଶାରଦା—ସେତକି ସୁଚନ ସୃଷ୍ଟି ତୁମେ, ପୁରୁଷ ?

ବୀରେନ୍ଦ୍ର—ନୋହୁଁ ?

ଶାରଦା—କ'ଣ କହନ୍ତି ପୁଣି—

ବୀରେନ୍ଦ୍ର—ଗିରି ଗଳ୍ପକି ?

ଶାରଦା—ବଚନ କ'ଣ ?

ବୀରେନ୍ଦ୍ର—ସାମାନ୍ୟ କଥାରେ ?

ଶାରଦା—ବଚନ ସୃଷ୍ଟି ପରି !

ବୀରେନ୍ଦ୍ର—ପ୍ରକୃତରେ ତୁମ୍ଭେ ନାରୀ, ବଚନ ସୃଷ୍ଟି !—ପ୍ରିୟେ ! ପ୍ରିୟେ ! ( ଆଲିଙ୍ଗନ କରିବାକୁ ଉଦ୍ୟତ )

ଶାରଦା—(ବାଧାଦେଇ) ପ୍ରାଣେଶ୍ୱର ! ପ୍ରାଣେଶ୍ୱର ! ଏ କଣ' କରୁଛ ? ଭୁଲିକି ଗଲ ଅମ୍ଭମାନଙ୍କର ପ୍ରତିଜ୍ଞା—ଅମ୍ଭେମାନେ ଯେ କୃତ ସଙ୍କଳ୍ପ ହୋଇଛୁଁ—ସମ୍ରାଟ ଯେ ପର୍ଯ୍ୟନ୍ତ ତାଙ୍କର ଅଭିଳଷିତ ସ୍ଥାନରେ ଅର୍ପିତ ନ ହୋଇଛନ୍ତି—ରାଜା, ରାଜା ସଙ୍ଗେ ଯେ ପର୍ଯ୍ୟନ୍ତ ମିଳିତ ନ ହୋଇଛନ୍ତି—ଅମ୍ଭମାନଙ୍କର ମିଳନ ଅସମ୍ଭବ—ପରସ୍ପର ମଧ୍ୟରେ ଆଲିଙ୍ଗନ ମଧ୍ୟ ଅସମ୍ଭବ ?

ବୀରେନ୍ଦ୍ର—ନିଶ୍ଚୟ ଅସମ୍ଭବ ପ୍ରେୟସି ! କ୍ଷଣିକ ବିସ୍ମରଣ ଯୋଗୁଁ ମୋତେ କ୍ଷମାକର, ପ୍ରେୟସି ! କୁହ, ପ୍ରିୟେ ! କି ଉପାୟରେ ଅମ୍ଭେମାନେ କୃତକାର୍ଯ୍ୟ ହେବା ?

ଶାରଦା—ଉପାୟ ! ଉପାୟକର୍ତ୍ତାଙ୍କ ହାତରେ—ତେବେ ବାବା ଉପାୟ ନିମନ୍ତେ ସମ୍ରାଜ୍ଞୀଙ୍କୁ ଯେଉଁ ପତ୍ର ଦେଇଥିଲେ, ନିଶ୍ଚୟ ସେଥିରେ କୌଣସି ଗୋପନ ପରାମର୍ଶ ଅଛି—ସେହି ପରାମର୍ଶାନୁଯାୟୀ କାର୍ଯ୍ୟ କରିବାକୁ ସମ୍ରାଜ୍ଞୀ ବୋଧହୁଏ ଅମ୍ଭମାନଙ୍କୁ ଡକାଇ ପଠାଇଛନ୍ତି—କାହିଁ ? ସମ୍ରାଜ୍ଞୀଙ୍କର ଦେଖାନାହିଁ କାହିଁକି ?

ବୀରେନ୍ଦ୍ର—ବେଳବିତ ଅନେକ ହୋଇଗଲାଣି—ଦେଖ, ଏପରି ସ୍ଥାନରେ ଅମ୍ଭମାନଙ୍କର ବେଶିକ୍ଷଣ ରହିବାଟା କଦାପି ଉଚିତ ନୁହେଁ ।

ଶାରଦା—ବିଶେଷତଃ ମୋ'ପକ୍ଷେ—ଯେତେବେଳେ ନିର୍ବାସିତର କନ୍ୟା ମୁହିଁ । କାହାରିକୁ ଦେଖୁନାହିଁ ଯେ ଖବରଟା ନିଅନ୍ତା'ନ୍ତା ।

ବୀରେନ୍ଦ୍ର—ଅଚ୍ଛା, ବର୍ତ୍ତମାନ ଚାଲ, ସନ୍ଧ୍ୟା ସମୟରେ ଜେମାଦେଈ ଯେତେବେଳେ ବଗିଚାକୁ ବୁଲିବାକୁ ଆସିବେ, ସେତିକାବେଳେ ଆସିବା ।

ଶାରଦା—ମୋ'ର ମନ କାହିଁକି କାପରି ଗୁଡ଼େଇ ପୁଡ଼େଇ ହେଉଛି—ଜେମାଦେଈଙ୍କ କଥା ଦେଇ କଥା କେବେ ଏପରିଭାବେ ଭାଙ୍ଗନ୍ତି ନାହିଁ ?

ବୀରେନ୍ଦ୍ର—ତୁମର ଖାଲି ସବୁବେଳେ ଅମଙ୍ଗଳ ଚିନ୍ତା—ଚାଲ, ପରେ ଆସିବା । ପରମେଶ୍ୱର ! ଏ'ମହତ୍ ଉଦ୍ଦେଶ୍ୟ ସାଧନରେ ଯେତେବେଳେ ବ୍ରତୀ କରାଇଛନ୍ତି, ସେତେବେଳେ ଉପାୟ କରିଦେଇ, ଧନ୍ୟ କରନ୍ତୁ !

ସୁବର୍ଣ୍ଣ—(ନେପଥ୍ୟ) କାହିଁ, କାହିଁ କନ୍ୟା ମୋର ?

ଶାରଦା—ଏ କ'ଣ ? ମହାରାଜ ଏପରି କ'ଣ କହୁଛନ୍ତି ?

ବୀରେନ୍ଦ୍ର—ଜେମାଦେଈଙ୍କର କ'ଣ ହେଲା କି ?

(ସୁବର୍ଣ୍ଣକେଶରୀଙ୍କର ପ୍ରବେଶ)

ସୁବର୍ଣ୍ଣ—କାହିଁ, କାହିଁ କନ୍ୟା ମୋର ? ତୁ' କିଏ ?

ଶାରଦା—ଏ ଅଭାଗିନୀ ଶାରଦା, ମହାରାଜ !

ସୁବର୍ଣ୍ଣ—ଶାରଦା !—ତୁ ଏଠି ? କେବେ ? କାହିଁ କନ୍ୟା ମୋର-କାହିଁ ଲୁଚାଇଛୁ ? ପ୍ରତିଶୋଧ ନେବାକୁ ଆସିଛୁ କି ? ଦେ, ଦେ, ଶାରଦା । ମୋର ପ୍ରାଣର ପିତୁଳାକୁ ଫେରାଇ ଦେ—ମୁଁ ତୋତେ ଏ' ନଗର ଅର୍ଦ୍ଧ ମଜା କରିବି ନାହିଁ—ତା'ର ପିତାକୁ ସ୍ୱଦେଶକୁ ଫେରି ଆସିବାକୁ ଏହିକ୍ଷଣି ହୁକୁମ ଦେଉଛି

ବୀରେନ୍ଦ୍ର—ମହାରାଜ ! ମହାରାଜ ! ହିରସ୍ଥିର ହୁଅନ୍ତୁ ! କହନ୍ତୁ ଘଟଣା କ'ଣ—ଜେମାଦେଈ କ'ଣ ଉଆସ ମଧ୍ୟରେ ନାହାନ୍ତି ?—କିଛନ୍ତୁ ଥିବେ !

ସୁବର୍ଣ୍ଣ—ତୁମ୍ଭେ କ'ଣ ତେବେ ଠିକ୍ ଜାଣ, ଶାରଦା ଚୋରି କରି ନାହିଁ ? ଗୁଲ, ଗୁଲ ବୀରେନ୍ଦ୍ର, ମୁଁ ତୁମ୍ଭଙ୍କୁ ଅଧୁରି ଜଗିପଦ ଦେବି—ଖାଲି ଥରେ ଦେଖାଇ ଦିଅ, ମା ମୋର କେଉଁଠି ଲୁଚିକରି ଖେଳୁଛି—ଡାକି ଡାକି ଥକି ଗଲିଣି, ଅଦୌ ଉତ୍ତର ପାଉ ନାହିଁ—ମା, ମା, (ବ୍ୟଥିତ ହେବା)

ଶାରଦା—ସହ ! ସହ ! (ବ୍ୟଥିତ ହେବା)

( ଦୂତର ବେଗେ ପ୍ରବେଶ )

ଦୂତ—ମହାରାଜ ! ସର୍ବନାଶ ଉପସ୍ଥିତ—ଦୁର୍ଗଦ୍ୱାର ଜନ୍ମ କୃତ ।

ବୀରେନ୍ଦ୍ର—ଦୁର୍ଗଦ୍ୱାର ଜନ୍ମ କୃତ !

ସୁବର୍ଣ୍ଣ--ଦୁର୍ଗଦ୍ୱାର ଉନ୍ମୁକ୍ତ ? ତେବେ କ'ଣ ମା ମୋର ବୃଢ଼ବାହାରକୁ ଯାଇଛି ? ଦ୍ୱାର ଖୋଲିଲା କିପରି ? ( ଜାମାରେ ମଣିରଖିବାର ସ୍ଥାନ ସନ୍ଧାନକରି) ଏ'କଣ ? ମୋର ମଣି କାହିଁ ? ମଣି ଗଲା କେଉଁଆଡ଼େ ? ମଣି ସହିତ ମା କ'ଣ ମୋର ଅପହୃତା ହୋଇଛି ? ଯାଅ ସେନାପତେ ! ଶତ୍ରୁ ଯେବେ ମଣି ସହିତ ମୋର ହୃଦୟର ମଣିକୁ ଗ୍ରେପ୍ତାର କରି ନେଇଥାଏ, ଅନୁନୟ କରି କହିବ—ସେ ପ୍ରସ୍ତର ଖଣ୍ଡରେ ମୋର ଆଉ ପ୍ରୟୋଜନ ନାହିଁ—ଏ' ଦୁର୍ଗ ସ୍ୱଚ୍ଛନ୍ଦରେ ସେ ଅଧିକାର କରି ପାରନ୍ତି—ଉତ୍କଳ-ସିଂହାସନ ନିର୍ବିବାଦରେ ଭୋଗ କରି ପାରନ୍ତି; ବିନିମୟରେ ଏତିକି କେବଳ ଦାନ କରନ୍ତୁ ଦରିଦ୍ରର ଏକମାତ୍ର ନିଧିକୁ ଫେରାଇ ଦିଅନ୍ତୁ—ବୃଦ୍ଧର ଏକମାତ୍ର ଅବଲମ୍ବନକୁ ପ୍ରତ୍ୟର୍ପଣ କରନ୍ତୁ । ଯାଅ ଯାଅ, ସେନାପତେ ! ଯାଅ, ଶାରଦା ! ନା, ନା, ତୁମ୍ଭେମାନେ ଫେରିଆସ—ନିଜେ ମୁଁ ଯାଏଁ—ମୋର କାକୁତି ମିନତିରେ ମା ମୋର ନିଷ୍ଠୁରଙ୍କୁ ତରଳାଇ ପାରିବ—ହୃଦୟ-ମଣିକୁ ମୋର ଲୁଣ୍ଠାଇ ନେଇ ଆସିବି—ନନ୍ଦ ! ନନ୍ଦ ! ନୟନର ମଣି ମୋର—ପ୍ରାଣର ଧନ ମୋର ! (ବେଗେ ପ୍ରସ୍ଥାନ)

ଶାରଦା—ସବୁ ! ସବୁ ! (କାନ୍ଦିବା)

ବୀରେନ୍ଦ୍ର—ଏ'କଣ କାନ୍ଦିବାର ସମୟ, ଶାରଦା ? ଆସ ଖୋଜିବା, କାହିଁ ଲୁଚିଛନ୍ତି ଦେବୀ ପ୍ରତିମା ଆମ୍ଭର ?

( ବେଗେ ଉଭୟଙ୍କର ପ୍ରସ୍ଥାନ )

---

# ଦ୍ୱିତୀୟ ଦୃଶ୍ୟ

[ ଗ୍ରୈବରଙ୍କ ଶିବିର ]

ସୁଭଦ୍ରା—ଏ'କ'ଣ ଶୁଣୁଛୁ ବାସୁଦେବ ? ନନ୍ଦଙ୍କ ଏତେବଡ଼ ହୀନ ଚରିତ୍ର ?—ସାମାନ୍ୟ କାମ ଲାଳସରେ ଆପଣାର ପିତାର, ରାଜ୍ୟର, ଜାତିର ମଧ୍ୟ ସର୍ବନାଶ କରିବାକୁ ଉଦ୍ୟତ ହୋଇଥିଲା ?

ବାସୁ—( ସ୍ୱଗତ ) ଏ'ଯେ ହିତରେ ଅହିତ ଘଟିଲା, ଦେଖୁଛି ?

ଗ୍ରୈବ—ମା, ମୋତେ ଗାଳି ଦେଉଥିଲ ପରା, ଦେଖିଲ ତ ବୃଦ୍ଧର ଗୁଣକୁ ? କପଟ କୌଶଳରେ ଗୋଟିଏ ବାରବାଳାସିଙ୍କୁ—

ବାସୁ—ଏତେକ କହନ୍ତୁ, ମହାରାଜ ! ପବିତ୍ରାତ୍ମା ଜେମାଦେଈଙ୍କ ପ୍ରତି ଏ'ପରି ଅପବାଦ କଥା ବ୍ୟବହାର କରନ୍ତୁ ନାହିଁ । ଓଃ, ଏ'ଯେ ବିଷଧାର ପରି ଶ୍ରବଣ ମଧ୍ୟରେ ପ୍ରବେଶ କରୁଛି—ଶେଳ ସଦୃଶ ମର୍ମକୁ ଅଘାତ କରୁଛି ? ( ସ୍ୱଗତ ) ହାୟ ! କାହିଁକି ମୁଁ ଜେମାଦେଈଙ୍କୁ ଏ'ପରି ଦୁଃସାହସିକ କାର୍ଯ୍ୟରେ ବ୍ରତୀ କରାଇଲି ? କଳଙ୍କ ମାତ୍ର ତାଙ୍କର ସାର ହେଲା ସିନା ! ଓଃ, ଏଥି ପୂର୍ବରୁ ମୋର ମରଣ ନ ହେଲା କାହିଁକି ? ( ପ୍ରକାଶ୍ୟେ ) ମହାରାଜ ! ମହାରାଜ ! ମୁଁ ମୁକ୍ତି ଲୋଡ଼େଁ ନାହିଁ—ମୋତେ ପ୍ରାଣଦଣ୍ଡ ଦିଅନ୍ତୁ ! ମା ! ମା ! ବାଧା ଦିଅନ୍ତୁ ନାହିଁ ! ନା—

ଗ୍ରୈବ—ପ୍ରାଣଦଣ୍ଡ ଲୋଡ଼ୁଛୁ, ବୃଦ୍ଧ ? ଦେବ ନାହିଁ—ଯେଣୁ ଏହି ମୁକ୍ତି ତୋର ପ୍ରାଣଦଣ୍ଡାପେକ୍ଷା ଗୁରୁତର ଦଣ୍ଡ ହେବ ।

ବାସୁ—ଠିକ୍ କହୁଛନ୍ତି, ମହାରାଜ ! ଅତୀବ ଗୁରୁତର ଦଣ୍ଡ; ତଥାପି ମୁଁ ମୁକ୍ତି ଲୋଡ଼େଁ—(ସ୍ୱଗତ) ଜୀବନର ଶେଷବାୟୁ ନିର୍ଗତ ହେବା ପର୍ଯ୍ୟନ୍ତ, ଜେମାଦେଈଙ୍କୁ ରକ୍ଷା କରିବା ମୋର ପ୍ରଧାନ କର୍ତ୍ତବ୍ୟ ।

ଗ୍ରୈବ—କ'ଣ ଭାବୁଛୁ, ପାଷଣ୍ଡ ?

ସୁଭଦ୍ରା—ଭୈରବ !

ଭୈରବ—ମା !

ସୁଭଦ୍ରା—ଏହିକରେ ତୋର ମନୁଷ୍ୟତ୍ୱ—ଏହିକାରେ ତୋ'ର ବୀରତ୍ୱ ? ଅଦ୍ୟାବଧି ଆତ୍ମସଂଯମ କରିବାକୁ ଶିଖିଲୁ ନାହିଁ ?--ଗୋଟିଏ ଦେଶ-ହିତୈଷୀ, ପକ୍ୱମତି, ପକ୍ୱକେଶ ବୃଦ୍ଧ, ରାଜ-ପରିବାର ଓ ରାଜ୍ୟର ମଙ୍ଗଳ ସକାଶେ, ଆପଣାକୁ ବିପନ୍ନ କରି ସୁଦ୍ଧା ଅହୋରାତ୍ର ଚେଷ୍ଟିତ—ଆଜ ତୁ ଯୌବନ-ସୁଲଭ ଚଞ୍ଚଳତା ବଶତଃ ଇତର ଭାବେ ତାଙ୍କୁ ତିରସ୍କାର କରିବାକୁ ଅକୁଣ୍ଠିତ ? ରାଜା ତୁହି, ଶତ ଶତ ପ୍ରକାର ପାଳକ ତୁହି—ଧୀର, ସ୍ଥିର ଓ ସଂଯତ ଭାବେ କାର୍ଯ୍ୟ କରିବା ତୋ'ର ଉଚିତ ନୁହେଁ କି ? ଏତକ ତୋ'ର ବୁଝିବା ଉଚିତ, ମନ୍ତ୍ରୀ ମହାଶୟ କ'ଣ ଜାଣିଥିଲେ, ଯେ ସେ ଯାହାପାଇଁ ଜୀବନ ଉତ୍ସର୍ଗ କରିବାକୁ ଯାଉଅଛନ୍ତି, ସେ ଜଣେ ବାରବିଳାସିନୀ—

ବାସୁ—ମା ! ମା ! ପ୍ରତ୍ୟାହାର କରନ୍ତୁ ସେ ବିଶେଷଣ—ନୀଳନଭ ଗାତ୍ରରେ ଘନ-ରେଖା ଅଙ୍କିତ କରିଦିଅନ୍ତୁ ନାହିଁ, ସୁବିମଳ ପୁଣ୍ୟ ବକ୍ଷରେ ପାପ-କଳଙ୍କ ଲେପନ କରି ଦିଅନ୍ତୁ ନାହିଁ—ସେ ଯେ ନିଷ୍କଳଙ୍କ ଚନ୍ଦ୍ରମା । କଳଙ୍କ ଯାହା ମନେ କରୁଛନ୍ତି ସେ କେବଳ ମୁହିଁ—ଏ' ପାପିଷ୍ଠ—ଏ' ନରାଧମ ।

ଭୈରବ—ମୋତେ ଗାଳିଦିଅ ପଛକେ, ମା—ଠିକ୍ ଜାଣିଥାଅ, ଏ' ଗୋଟାଏ ନୂତନ ଗୃଢ଼ଭୁସ୍ତ—କଦାପି ଭୁଲିଯାଅ ନାହିଁ, ମା ।

ସୁଭଦ୍ରା—ମୁଁ ତୁମ୍ଭର କଥା କିଛି ବୁଝି ପାରୁ ନାହିଁ ।

ବାସୁ—ଶୁଣନ୍ତୁ ତେବେ ମା । ଯେଉଁ କାର୍ଯ୍ୟ ହେତୁ ଜେମାଦେଈ ଅଦ୍ୟ କଳଙ୍କିନୀ, ସେହି କାର୍ଯ୍ୟର ପ୍ରବର୍ତ୍ତକ ଏ' ଅଧମ । ଯେତେବେଳେ ଦେଖିଲି, ଉଭୟ ପକ୍ଷ କୌଣସି ମତେ ଆପଣା ଆପଣାର

କିଦ୍ ତ୍ୟାଗ କରିବେ ନାହିଁ—ଜନ୍ତୁ ଜନ୍ତୁ ରୋଗ ଓ ଖାଦ୍ୟାଭାବରେ ଶତ ଶତ ପ୍ରାଣୀ ପ୍ରାଣ ହରାଉ ଅଛନ୍ତି, ଅଥଚ ଉଭୟଙ୍କ କୌଣସି ଦଳପତିର ଭ୍ରୂକ୍ଷେପ ସୁଦ୍ଧା ନାହିଁ—ସର୍ବସ୍ୱାନ୍ତ ହେଲେ ମଧ୍ୟ ସେମାନେ ଆପଣା ଆପଣାର ଅସ୍ତ୍ର-ଗରିମା ରକ୍ଷା କରିବାକୁ ଉତ୍କ୍ଷିପ୍ତ—ଆଜି ମୋର ଜୀବନାଶା ମଧ୍ୟ ଅତ୍ୟଳ୍ପ; ତେଣୁତେବେଳେ ବାଧ୍ୟ ହୋଇ କେମାନେଇଙ୍କୁ ଏହି କାର୍ଯ୍ୟରେ ପ୍ରବର୍ତ୍ତାଇଲି । ମନେ କରିଥିଲି, ପ୍ରେମିକ ପ୍ରେମିକାର ମିଳନ ହେବ—ଶତ୍ରୁ ଶତ୍ରୁର ମିଳନ ହେବ—ରାଜ୍ୟର ଭବିଷ୍ୟତ୍ ମଙ୍ଗଳମୟ ହେବ—ଫଳତଃ, ଆପଣଙ୍କର ଓ ମୋର ଆଶା ଫଳବତୀ ହେବ;—ଦେଖୁଛୁ ଏବେ, ଏ'ଯେ ହିତରେ ଅହିତ ଘଟିଲା ।

ସୁଭଦ୍ରା—କ'ଣ କହ'ଛୁ ତୁ, ଗୌରୀ ?

ଗୌର—କନ୍ୟା ପକ୍ଷେ କି ଏହା ଶୋଭନୀୟ, ମା ! ସହସ୍ର ଉପଦ୍ରବ ହେଲେହେଁ ନିଜର ସ୍ୱାର୍ଥ ସିଦ୍ଧି ନିମନ୍ତେ ପିତାର, ରାଜାର ଓ ରାଜ୍ୟର ଭାଗ୍ୟଲକ୍ଷ୍ମୀ ଅପହରଣ ପୂର୍ବକ ଶତ୍ରୁର କରପୁଟରେ ଅର୍ପଣ କରିବା ?

ବାସୁ—ଶତ୍ରୁକୁ ମିତ୍ରଭାବେ ଆଲିଙ୍ଗନ କରିବା ସ୍ୱାର୍ଥ ନିମନ୍ତେ, କାଳକବଳରୁ ଜୀବମାନଙ୍କୁ ରକ୍ଷା କରିବା, ସ୍ୱାର୍ଥ ନିମନ୍ତେ ରାଜ୍ୟର ମଙ୍ଗଳ ସାଧନ କରିବା ସ୍ୱାର୍ଥ ନିମନ୍ତେ—ଏହା ଅକିଞ୍ଚିତ୍କର କାଞ୍ଚନ ନୁହେଁ କି ?

ଗୌର—ଏହି କାଞ୍ଚନ-ପ୍ରୟାସୀ, ଗୌରଙ୍କ କଦାପି ହୋଇ ନ ପାରେ—ଉଦ୍ଦେଶ୍ୟ ଯାହାହେଉ, ଉତ୍କୋଚରେ ବଶୀଭୂତ ହେବା କର୍ଣ୍ଣାଟରାଜ ପକ୍ଷେ ଅସମ୍ଭବ !

ବାସୁ—ମହାରାଜ ! ଯୁଦ୍ଧ କି ତେବେ ଆପଣଙ୍କର ମୁଖ୍ୟ ଉଦ୍ଦେଶ୍ୟଥିଲା

ଭୈରବ—ଯୁଦ୍ଧରେ ପ୍ରବୃତ୍ତ ହେଲେ, ଯୋଦ୍ଧାର ସେପରି ଉଦ୍ଦେଶ୍ୟ ସାଧାରଣତଃ ହୋଇଥାଏ ।

ସୁଭଦ୍ରା—ବୁଝିଛୁ, ବୁଝିଛୁ ମୂର୍ଖ ! ତୁ ରଣମଦମତ୍ତ ହୋଇ ରାଜନନ୍ଦିନୀ ମସ୍ତକରେ କଳଙ୍କ ଅର୍ପଣ କରିଛୁ—ଏହି ମହାଜନଙ୍କୁ ମଧ୍ୟ ହତ୍ୟା କରିବାକୁ ବସିଥିଲୁ ।—ଅରେ ମୂର୍ଖ ! ମନେ କରିଛୁ କି ତୁହି, ପାଶବିକ ବଳରେ କେବଳ ବୀରତ୍ୱର ପରିଚୟ ମିଳେ ? ଆତ୍ମାଭିମାନ ରକ୍ଷାରେ କି କେବଳ ସଂଯମର ପରିଚୟ ମିଳଇ ?—ଭୁଲ, ଭୁଲ୍ ମୂର୍ଖ । ପ୍ରକୃତ ବୀରତ୍ୱ—ପ୍ରକୃତ ସଂଯମ ଯେବେ ଦେଖିବାକୁ ଇଚ୍ଛୁ, ଏହି ମହାଜନଙ୍କର କାର୍ଯ୍ୟ ପ୍ରତି ଲକ୍ଷ୍ୟ କର—ମୃତ୍ୟୁ ଗ୍ରାସରେ ପତିତ ହୋଇ ସୁଦ୍ଧା ମହତ୍ ଉଦ୍ଦେଶ୍ୟ ସାଧନରୁ କିପରି ତିଳେ ମାତ୍ର ବିଚଳିତ ହୋଇ ନାହାନ୍ତି—ସ୍ୱରାଜ୍ୟର ସମସ୍ତ ଶକ୍ତି ଧାରଣ କରି ସୁଦ୍ଧା ଅବନତ ମସ୍ତକରେ କିପରି ନିର୍ବାସନ ଯାତନା ସହ୍ୟ କରିଅଛନ୍ତି ? ଅନୁତାପ କର, ମୂର୍ଖ । ନିଜର ଆଚରଣ ନିମନ୍ତେ ପରିତାପ କର—ଚାଲ, ମନ୍ତ୍ରୀ ! ନିଜେ ମୁଁ ଉତ୍କଳରାଜାଙ୍କ ନିକଟକୁ ଯିବି—କାନୁପାତ ପୂର୍ବକ ରାଜନନ୍ଦିନୀଙ୍କୁ ବଧୂ ରୂପେ ଭିକ୍ଷା କରିବି ।

ଭୈରବ—ମା ! ମା ! ଏ' କଣ କରୁଛ ?

ସୁଭଦ୍ରା—ତୋତେ ମଧ୍ୟ ମୋ ସଙ୍ଗେ ଯିବାକୁ ହେବ—ତୋ'ର ଆଚରଣ ପାଇଁ ତୁ ନିଜେ କ୍ଷମା ଭିକ୍ଷା ମାଗି ନେବୁ ।

ଭୈରବ—ମା !

ସୁଭଦ୍ରା—ଏ' ମାତୃ-ଆଦେଶ । ଆ' ମୋ ସଙ୍ଗେ—ଆସ ମନ୍ତ୍ରୀ ।

( ବାସୁଦେବଙ୍କ ସହ ପ୍ରସ୍ଥାନ )

ଭୈରବ—ଜୟ । ବୀର ହୃଦୟରେ କି ଶେଳାଘାତ । (ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

[ ଦୁର୍ଗାଭ୍ୟନ୍ତର ]

ସୁବର୍ଣ୍ଣ—ମୁଁ ଯେ କିଛି ବୁଝିପାରୁନାହିଁ, ବୀରେନ୍ଦ୍ର ! କେଉଁ କାରଣରୁ ନନ୍ଦୀ ମୋର ଏପରି ହୀନାଚରଣ କଲା ? ପୁଣି ଭୈରବ ଲେଖିଛନ୍ତି—ସେ ଦୁଷ୍ଟ ଦନ୍ଦୀ, ଘୃଣ କାପାଳିକଙ୍କରେ ପିତା, ରାଜା ଓ ରାଜ୍ୟର ସର୍ବନାଶ କରିବାକୁ ବସିଥିଲା—ଏହା କି ସତ୍ୟ ? ମୋ ନନ୍ଦ ପକ୍ଷେ କି ଏହା ସମ୍ଭବ ? ମୁଁ ଯେ କିଛି ସ୍ଥିର କରି ପାରୁନାହିଁ ?

ବୀରେନ୍ଦ୍ର—ମହାରାଜ ! ଭୈରବ କଥାରେ ବିଶ୍ୱାସ କରୁଛନ୍ତି ? ସେହି ଅପବିତ୍ର ପଦକୁ ଶତଖଣ୍ଡରେ ଛିଣ୍ଡାଇ ନ ପକାଇ ଏ ପର୍ଯ୍ୟନ୍ତ ହାତରେ ଧରି ଠିଆ ହୋଇଛନ୍ତି ? ଭୈରବ, ଭୈରବ— ଧର୍ମର ମର୍ଯ୍ୟାଦା ସେ କାହୁଁ ବୁଝିବ ? ଅମୂଲ୍ୟ ନାରୀର ବ୍ୟବହାର ସେ କାହୁଁ ଜାଣିବ ? ମହାରାଜ ! ଜେମାଦେଇ ଦେବୀ—ପଶୁକୁ ସେ ମନୁଷ୍ୟ କରିପାରନ୍ତି—ଏପରି ନୀଚତା ତାଙ୍କ ପକ୍ଷେ ଏକାବେଳକେ ଅସମ୍ଭବ । ଯଦ୍ୟପି ସେ ଆପଣଙ୍କର ଅଜ୍ଞାତସାରରେ ମନ୍ତ୍ରୀ ଗ୍ରହଣ କରିଥା'ନ୍ତି, ନିଶ୍ଚୟ ଜାଣନ୍ତୁ ମହାରାଜ ! ସେ କୌଣସି ମହଦୁଦ୍ଦେଶ୍ୟ ସାଧନ ନିମନ୍ତେ—ପିତା, ରାଜା ଓ ରାଜ୍ୟର ମଙ୍ଗଳ ନିମନ୍ତେ— ଘୋର ପାପ ଗ୍ରାସରୁ ପୁଣ୍ୟଭୂମିକୁ ରକ୍ଷା କରିବା ନିମନ୍ତେ ।

ସୁବର୍ଣ୍ଣ—ଏତେ କଳ୍ପନା ନିଷ୍ପ୍ରୟୋଜନ—ନନ୍ଦଠାରୁ ଏହିକ୍ଷଣି ସମସ୍ତ ଶୁଣାଯିବ । ଯାହାହେଉ, ଅତୀବ ସୌଭାଗ୍ୟ ମୋର, ଯେ କନ୍ୟାକୁ ମୋର ଫେରି ପାଇଛି । ବୀରେନ୍ଦ୍ର ! ସେ

କଳଙ୍କିନୀ ହେଉ ବା ଅକଳଙ୍କିନୀ ହେଉ, ଏ' ସଂସାରରେ ମୋ'ର ଏକମାତ୍ର ଆନନ୍ଦଦାୟିନୀ । ତା'ର ସ୍ନେହ-ସୁଧା ପାନ କରି ଏ' ପର୍ଯ୍ୟନ୍ତ ଜୀବିତ ଅଛି ପରା ?

( ଶାରଦାର ବେଗେ ପ୍ରବେଶ )

ଶାରଦା—ମହାରାଜ ! 　　(କାନ୍ଦବା)

ସୁବର୍ଣ୍ଣ—ଏ'କ'ଣ ଶାରଦା ? କାନ୍ଦୁଛୁ ଯେ ? ସଖୀ ତୋ'ର କ'ଣ ଡାକ ଶୁଣିଲା ନାହିଁ ? ଶିବିକାରୁ ଓହ୍ଲାଇଲା ନାହିଁ ? ବୃଦ୍ଧ ପିତାକୁ ତା'ର ଦେଖିବାକୁ ଧାଇଁ ଆସିଲା ନାହିଁ ? କାହିଁକି ? ଦୋଷ କରିଛି ବୋଲି ? ହେଲାତ ହେଲା, ଏଥିପାଇଁ ଏତେ ଭୟ କାହିଁକି ? ଏତେ ଲଜ୍ଜା କାହିଁକି ? ସେ କି ମୋର କନ୍ୟା ନୁହେଁ—ମୁଁ କି ତା'ର ଜନ୍ମଦାତା ନୁହେଁ ? ଯା, ଯା ଶାରଦା ! ସଖୀକୁ ତୋ'ର ଏହିପରି ବୁଝାଇ ସୁଝାଇ ଘେନି ଆ—ନା, ନା, ନିଜେ ଯାଏଁ ମୁଁ—ନିଜେ ବୁଝାଇ ସୁଝାଇ ଘେନି ଆସିବି । ଝିଅ ମୋର ଭୟ କରୁଛି, ମୁଁ ଡାକୁଛି ତା'କୁ. ତିରସ୍କାର କରିବି ବୋଲି—ହାୟ ! ମ ତୃସ୍ନା ବାଳା ମୋର ତୁ' କି ତୋର ପିତାର ହୃଦୟ ଜାଣି ନାହୁଁ ? ସମସ୍ତ ସଂସାରକୁ ସେ ଯେ ଏକଅଙ୍କେ ଥୋଇଛି—ଏକା ତୋତେ ଯେ ଅନ୍ୟ ଅଙ୍କେ ଥୋଇଛି । ପର୍ବଟିକୁ ସେ ଅନାୟାସେ ବିସର୍ଜନ କରିପାରେ, କିନ୍ତୁ ପରଟିକ ଯେ ତା'ର ରକ୍ତସଙ୍ଗେ ମିଶିଛି ।

( ପ୍ରସ୍ଥାନୋଦ୍ୟତ )

ଶାରଦା—ମହାରାଜ—

ସୁବର୍ଣ୍ଣ—ଆ,ଆ,ଶାରଦା ! ଦେଖିବୁ ତୁ ଏତେଡକାଡକି କଲି—ଏତେ ହୁଲହଲି କଲି—ହୁଁ କି ଚୁଁ କଲାନାହିଁ; କିନ୍ତୁ ମୁଁ କିଛି କରିବି ନାହିଁ—କେବଳ ସ୍ପର୍ଶ କରିବି—ଗୋଟିଏ ଚୁମ୍ବନ ଦେବି—

ମୃଦୁସ୍ୱରେ ଡାକୁଛ, ନନ୍ଦ ।—ଅଜ ସଖୀ ତୋ'ର ଜନ୍ମଶ୍ରୀ ହୋଇ ଉଠିବ—କପର ମୋତେ ବେଢ଼ାଇ ଧରବ ।

ଶାରଦା । ମହାରାଜ ।

ସୁବର୍ଣ୍ଣ—ଅ, ଅ ହେଳା କରନା ଶାରଦା । (ବେଗେ ପ୍ରସ୍ଥାନ)

ବୀରେନ୍ଦ୍ର—କ'ଣ ହୋଇଛି ? ତୁମେ ଏ'ପର ଅଧୀର ହେଉଛ କାହିଁକି ?

ଶାରଦା—ଅଧୀର ହେଉଛି କାହିଁକି ? ଭାବଲାବେଳକୁ ଯେ ହୃଦୟ ବଦୀର୍ଣ୍ଣ ହେଉଛି—କହିଲା ବେଳକୁ ଯେ ରସନା ସଙ୍କୁଚିତ ହେଉଛି ।

ବୀରେନ୍ଦ୍ର—ଉଲ୍ଲଣ୍ଠା ଅଜ ବଡ଼ ଅନା ପ୍ରିୟେ । କୁହ କ'ଣ ହୋଇଛି ? କେମାଦେଈଙ୍କର କୌଣସି ଅସୁସ୍ଥତା ଘଟି ନାହିଁତ ?

ଶାରଦା—ସହ୍ୟ । ସହ୍ୟ । (କାନ୍ଦବା)

ବୀରେନ୍ଦ୍ର—କ'ଣ ଘଟିଛି, ପ୍ରିୟେ ? କେମାଦେଈଙ୍କର କି ଅମଙ୍ଗଳ ଘଟିଛି ?

ଶାରଦା—ଅମଙ୍ଗଳ କି ମଙ୍ଗଳ ଜାଣେନାହିଁ, ପ୍ରଭୁ । ସଖୀ ଇହ-ଧାମରେ ଆଉ ନାହାନ୍ତି । ସହ୍ୟ । ସହ୍ୟ । (କାନ୍ଦବା)

ବୀରେନ୍ଦ୍ର—ଇହଧାମରେ ଅଜ ନା-ହା'-ନ୍ତି ?

(ସୁବର୍ଣ୍ଣ କେଶରୀଙ୍କର ପ୍ରବେଶ)

ସୁବର୍ଣ୍ଣ—ନାହିଁ—ରହିବ କାପର ? ଏତେ ସୁଖ କି ମାନବ ପକ୍ଷେ କେବେ ସମ୍ଭବ ? ମୁଁ ସମସ୍ତ ସୁଖ ଏକାକୀ ଭୋଗ କରବ ବୋଲି ଅଣ୍ଟ କରଥିଲି, କପର ହେଲା ? ମୂଳରୁ ଏକାବେଳକେ ଶେଷ । ଯାହାର ଯାହା ପ୍ରାପ୍ୟ ତାହା ଦେଇ ସିନା କେଜେ ଭୋଗ କରଥିଲେ ଚଳିଥା'ନ୍ତା ?—ସମସ୍ତଙ୍କୁ ଠକାଇ ନିଜେ ଏକା ସମୁଦାୟ ଭୋଗ କରବାକୁ ଗଲି, ଠକିବ ନାହିଁ ?—

ନୁହେଁ କି ବୀରେନ୍ଦ୍ର ? ତୁ କ'ଣ କହୁଛୁ, ଶାରଦା ? ଏ'କଣ? ତୁ ଏପରଭାବେ ଗୁହୁଁଛୁ କାହିଁକି ?—କ'ଣ କହୁଛ ? ମୁଁ ତୋ'ର ସ୍ୱାମୀକୁ ହତ୍ୟା କରିଛି ? ନା, ନା, ମୁଁ ହତ୍ୟା କରି ନାହିଁ—ଛି' କେବେ ମନେ କରନା—ତୋର କଣ ଏହା ବିଶ୍ୱାସ ହେଉଛି ? ସେ ଯେ ମୋର କନ୍ୟା—ଏକମାତ୍ର ସନ୍ତାନ । ମୁଁ ଯେ ତାକୁ ପ୍ରାଣଠାରୁ ଭଲପାଏ ।—କିଏ କହୁଛ, କନ୍ୟା ମୋର ନାହିଁ ? ସେ ତ ଅଛି—ଠିକ୍ ଏ ପାଦରେ ଶୋଇ ପଡ଼ିଛି ନା ? ଚାଲ, ଦେଖିବୁ ସେ ଉଠି ସାରିବଣି ।

ଶାରଦା—ମହାରାଜ । ମହାରାଜ !

ସୁବର୍ଣ୍ଣ—ନାହିଁ ? ମରିଛି ? କ'ଣ କହୁଛ, ମରିଛି ?—କିଏ ମାରିଛି ? କିଏ ସେ ହତ୍ୟାକାରୀ ? (ନେପଥ୍ୟକୁ ଚାହିଁ) ଏହି ଯେ ସେହି ହତ୍ୟାକାରୀ । ଏହି ଯେ ସେହି ଗୈର, ଏଣେ ଆସୁଛି । ପଳାଇ ଆସ—ନା, ନା, ତୁମ୍ଭେମାନେ ପଳାଅ—ମୁଁ ରହିବି—ମୁଁ ମରିବି—ମୁଁ ମଲେ ନନ୍ଦକୁ ମୋର ପାଇବି ।

ବୀରେନ୍ଦ୍ର—ମହାରାଜ । ପ୍ରକୃତସ୍ଥ ହେଉନ୍ତୁ !
(ନେପଥ୍ୟେ)-ଜୟ ସୁବର୍ଣ୍ଣ କେଶରୀଙ୍କର ଜୟ ।

ସୁବର୍ଣ୍ଣ—ପଳାଅ—ପଳାଅ—ଆଉ ରକ୍ଷାନାହିଁ—ଆଉ ରକ୍ଷାନାହିଁ ।

[ ସୁଭଦ୍ରା ବାସୁଦେବ ଓ ଗୈରଙ୍କର ପ୍ରବେଶ ]

ସୁଭଦ୍ରା }
ବାସୁଦେବ } ଜୟ ମହାରାଜ । ସୁବର୍ଣ୍ଣକେଶରୀଙ୍କର ଜୟ ।
( ବାସୁଦେବଙ୍କର ଅଭିବାଦନ )

ଗୈର—(ସ୍ୱଗତ) ମିଳ ମୁଖରେ ଶତ୍ରୁର ଜୟପଦୋଚ୍ଚାରଣ—କି ଲଜ୍ଜା ।

ସୁବର୍ଣ୍ଣ—କିଏ ? ବାସୁଦେବ ?—ତୁମେ କ'ଣ ନରହନ୍ତା ପକ୍ଷରୁ ଘାତକ ହୋଇ ଅସିଛ ?—କର, କର, ହତ୍ୟାକର ମୁଁ ପ୍ରସ୍ତୁତ ହୋଇଛି ।

ସୁଭଦ୍ରା—ମହାରାଜ ! ମହାରାଜ ! ଏ' କାହାର କଥା କହୁଛନ୍ତି ? ଅମ୍ଭେମାନେ ଯେ ଆପଣଙ୍କ ବୈବାହିକ ବୋଲି ବରଣ କରିବାକୁ ଅସିଛୁ ।

ସୁବର୍ଣ୍ଣ—ବୈବାହିକ ? କିଏ ?—କାର ବିବାହ ?

ସୁଭଦ୍ରା—ମହାରାଜ ଏହି ନିର୍ବୋଧ ଶିଶୁକୁ ତାର କିଛି ଚପଳତା ସକାଶେ କ୍ଷମା କରନ୍ତୁ—କନ୍ୟାରତ୍ନ ସମ୍ପ୍ରଦାନ କରି ନିଜ ସନ୍ତାନ ବୋଲି ଆଲିଙ୍ଗନ କରନ୍ତୁ ! ( ଗ୍ଲେରଅଡ଼େ ) କ୍ଷମା ପ୍ରାର୍ଥନା କର, ମୂର୍ଖ !

ଗ୍ଲେର—(ସ୍ୱଗତ) ମା ! ମା ! କି ନୀଚତା ଅବଲମ୍ବନ କରୁଛ ମା !—ଏହାଠାରୁ ଯେ ବୀରପକ୍ଷେ ମରଣ ଶ୍ରେୟସ୍କର ମା !

ସୁବର୍ଣ୍ଣ—ମୋର କନ୍ୟାର ବିବାହ ?—ଏ' ନିଶ୍ଚୟ ତୁମର ଷଡ଼ଯନ୍ତ୍ର, ବାସୁଦେବ ! ତୁମେ ଦେଖୁଛ ନନ୍ଦୀର ବିବାହ ନଦେଇ ଛାଡ଼ିବ ନାହିଁ ! ହଉ ଦିଅ, ଏଥର ମୁଁ ଆଉ ମନା କରିବି ନାହିଁ—ଶୀଘ୍ର ଆୟୋଜନ କର ! କି ଆନନ୍ଦ !—ହାୟ ! ତା'ର ମା ଥା'ନ୍ତା କି ?—ମୁଁ ନିଜେ ତାକୁ ସଜାଇ ନେଇଅସେଁ ! (ବେଗେ ପ୍ରସ୍ଥାନ)

ବାସୁ—ଜୟ ସୁବର୍ଣ୍ଣ—

ଶାରଦା—ପିତା ! ପିତା ! ଏ' କ'ଣ କହୁଛନ୍ତି ? ଜାଣି କି ପାରୁ ନାହାନ୍ତି, ମହାରାଜ ଯେ ଉନ୍ମାଦ ?

ବାସୁ—ଉନ୍ମାଦ ! ଏ' କ'ଣ କହୁଛୁ ଯେ ?

ବୀରେନ୍ଦ୍ର—କେମିତି କି ଅଛନ୍ତି, ପିତଃ ?

ବାସୁ—ବୁଝିପାରୁ ନାହିଁ, ବୀରେନ୍ଦ୍ର !

ବୀରେନ୍ଦ୍ର—ସମସ୍ତଙ୍କୁ ଶୋକ ସାଗରରେ ଭସାଇ ଦେଇ, ଯେଉଁମାନେ ଯେ ଇହଧାମରୁ ଚାଲି ଗଲେଣି ପିତଃ ।

ବାସୁ } ଇହଧାମରୁ ।　　ଭୈରବ—(ସ୍ୱଗତ) କପଟ ଘଟିଲା ?
ସୁଭଦ୍ରା }

ବାସୁ—ଅକାଶ ! ସ୍ଥିର ହୋଇ ରହୁଛ କପଟ, ଖଣ୍ଡଖଣ୍ଡ ହୋଇ ମୋ ମୁଣ୍ଡ ଉପରେ ଭାଙ୍ଗି ପଡ଼ୁ ନାହଁ କାହିଁକି ?—ମେଦିନୀ ! ହସୁଛ କପଟ, ତୁମେ ଦୀର୍ଣ୍ଣ ବିଦୀର୍ଣ୍ଣ ହୋଇ ମୋତେ ଗ୍ରାସ କରୁନାହଁ କାହିଁକି ?—ମୁଁ ଯେ ଶୁଣି ପାରୁ ନାହିଁ, ଯେଉଁମାନେ ଇହଧାମରେ ନାହାନ୍ତି—ମୁଁ ଯେ ସହ୍ୟ କରି ପାରିବି ନାହିଁ, ମୋର ସାଧନାର ଉଦ୍ଦେଶ୍ୟ ଅନ୍ତର୍ହିତ ହୋଇଛି—ନା, ନା ମିଥ୍ୟା କଥା, ମିଥ୍ୟାକଥା—ମୋର ଯେଉଁମାନେ ଅଛନ୍ତି—ମୋର ସାଧନାର ଉଦ୍ଦେଶ୍ୟ ଅନ୍ତର୍ହିତ ହୋଇ ନାହିଁ ।

(ବେଗେ ପ୍ରସ୍ଥାନ)

ଶାରଦା—ବାବା ! ବାବା !　　　　(ଅନୁଧାବନ)

ବୀରେନ୍ଦ୍ର—ଉଃ—କାହିଁ ଗଲି, ଦେବି ?　　　　(ପ୍ରସ୍ଥାନ)

ସୁଭଦ୍ରା—ଭୈରବ ! ଭୈରବ ! କଣ କଲୁରେ ତୁ ?—ଶେଷେ କ'ଣ ନାରୀ-ହତ୍ୟା କଲୁ ?

ଭୈରବ—ସଙ୍କେତ ସତର୍କ ପ୍ରହରୀ ପଠାଇଥିଲି ?

ସୁଭଦ୍ରା—ଏହି କରେ ହୃଦୟ ତୋ'ର ?—ତୁ କ'ଣ ଏତେ ନିର୍ମମ ? ତୋର ହୃଦୟରେ କ'ଣ ପ୍ରେମର ସୂକ୍ଷ୍ମଧାରା ସ୍ୱଳ୍ପ ପ୍ରବାହିତ ହେଉନାହିଁ ? ଗୋଟିଏ ବାଳିକା ତୋର ପ୍ରେମରେ ବିମୁଗ୍ଧା ହୋଇ ନିଜର ପିତା, ରାଜା ଓ ରାଜ୍ୟକୁ ଭୁଲିଗଲା—ଅବଶେଷେ ତୋ ପାଇଁ ଆତ୍ମ ବିସର୍ଜନ କଲା—କାହିଁ ତୁ ପାଗଳ ପ୍ରାୟ

ଉନ୍ମତ୍ତ ହୋଇ ଉଠନ୍ତୁ—'ହା ପ୍ରାଣେଶ୍ୱର ! ହା ପ୍ରାଣେଶ୍ୱର !'
ବୋଲି ଗଗନ ମେଦିନୀ ବିଦୀର୍ଣ୍ଣ କରି ଦିଅନ୍ତୁ—ନା ଧୀର ଗମ୍ଭୀର ସ୍ୱରରେ କହନ୍ତୁ,'ସଙ୍କେତର ସତର୍କ ପ୍ରହରୀ ପଠାଇଥିଲି' ?

ଗୌର—ମା ! ମା ! ସୁଭଦ୍ରାତନୟଙ୍କୁ କ'ଣ ଏତେ ଦୁର୍ବଳ ଜ୍ଞାନ କରନ୍ତି ଯେ ସେ ଗୋଟିଏ କାମୁକା, ଚରିତ୍ରହୀନା ନାରୀପାଇଁ ବିଚଳିତ ହେବ !—ଅନୁଶୋଚନା କରିବ ? ତୁମ୍ଭେହିଁ କୁହ, ମା ! ଏହାଙ୍କ ତୁମ୍ଭର ତନୟ ପକ୍ଷେ ଶୋଚନୀୟ ? ଆନନ୍ଦ କର, ମା ! ପାପୀୟସୀ ଆତ୍ମହତ୍ୟା କରିନାହିଁ, ଯେ ଭବ-ଯନ୍ତ୍ରଣାରୁ ମୁକ୍ତିଲାଭ କରିଅଛି ।

( ବାସୁଦେବଙ୍କର ପତ୍ରହସ୍ତେ ପ୍ରବେଶ )

ବାସୁ—ଓଃ ହୋଃ—ଏ' ଯେ ନିଜ ଶୋଣିତରେ ଲେଖା !

( ସୁବର୍ଣ୍ଣରେଖଶଙ୍କର ପ୍ରବେଶ )

ସୁବର୍ଣ୍ଣ—କି ପତ୍ର, ବାସୁଦେବ ? ମୋର ନନ୍ଦୀ କ'ଣ ଲେଖିଛି ? ମୁଁ କି ଶୁଣି ସହ୍ୟକରି ପାରିବି ? ନା, ନା, ପଢ଼ନା !—ହାତ ଧରୁଛି, ବାସୁଦେବ, ପଢ଼ନା !

ବାସୁ—ମହାରାଜ ! ଏ'ପତ୍ର ଯେ ଶୁଣିବା ଉଚିତ—ଆଜ ଜେମାଦେଈ ଯେଉଁ ଆଦର୍ଶ ରଖି ଯାଇଛନ୍ତି, ସେଥି ନିମନ୍ତେ ଆମ୍ଭମାନଙ୍କର ଆନନ୍ଦ ପ୍ରକାଶ କରିବା ଉଚିତ—ଜୀବନକୁ ଧନ୍ୟ ମନେ କରିବା ଉଚିତ ?

ସୁବର୍ଣ୍ଣ—କ'ଣ କହୁଛ, ମନ୍ତ୍ରି ! ସତେ ? ସତେ ? ତେବେ ପଢ଼, ପଢ଼—ମୁଁ ଶୁଣିବି, ଆନନ୍ଦ ପ୍ରକାଶ କରିବି—ଆନନ୍ଦ—ଓଃ ହୋଃ—ସେ ଯେ ନାହିଁ ? ମୋର ନନ୍ଦୀ ଯେ ମୋ' କୋଳରେ ନାହିଁ ?—ଓଃ ହୋଃ (ବ୍ୟଥିତ ହେବା)

ସୁଭଦ୍ରା—ଉଃ ! କି କରୁଣ ଦୃଶ୍ୟ ! ଶ୍ବେର, ଶ୍ବେର ! କ'ଣ କହୁଛରେ ତୁ ? ପଢ଼, ପଢ, ବାସୁଦେବ !—ପତ୍ରରେ କ'ଣ ଲେଖା ଅଛି ?

ଶ୍ବେର—(ସ୍ବଗତ) ମା'ଙ୍କର ଏତେ ବ୍ୟସ୍ତ ହେବାର କାରଣ ମୁଁ କିଛି ବୁଝି ପାରୁନାହିଁ—ଯାହାହେଉ ଈଶ୍ବରଙ୍କୁ ଧନ୍ୟବାଦ, ଯେ କର୍ତ୍ତାଙ୍କ ହାଦତଳୁ ଶତ୍ରୁ ସମକ୍ଷରେ ଅବନତ ସ୍ବୀକାର କରିବାକୁ ହୋଇନାହିଁ ।

ବାସୁ—ସୁଭଦ୍ରେ, ସମଭେ—

"ପିତଃ ! ଅନ୍ତିମକାଳରେ ଥରେ ଶ୍ରୀଚରଣ ବନ୍ଦନା କରିବାର ପ୍ରବଳ ବାସନା ଥିଲା, କେବଳ କର୍ତ୍ତବ୍ୟାନୁରୋଧ ଭୟରେ ପାରିଲି ନାହିଁ, କ୍ଷମା କରିବେ । ମନେ କରିଥିବେ, ବାବା ! ମୁଁ ମଣି ହରଣ କରିଥିଲି—ପିତା, ରାଜା ଓ ରାଜ୍ୟକୁ ବରଣ କରିବାକୁ ବସିଥିଲି—କେବଳ କାମଲାଳସା ତୃପ୍ତି ନିମନ୍ତେ; କିନ୍ତୁ ତାହା ଭ୍ରମ ! ଯେତେବେଳେ ଏ ପର୍ଯ୍ୟନ୍ତ ଜଳେମାନ ଶ୍ବାସ ଥାଏ, କେଶରୀନନ୍ଦନୀଙ୍କୁ କଦାପି ଏତେ ହେୟ ଜ୍ଞାନ କରିବେ ନାହିଁ ।—ମୋ'ର ପ୍ରକୃତ ଉଦ୍ଦେଶ୍ୟ ଥିଲା—ମହାମାରୀ ଯୁଦ୍ଧ କିପରି ନିବାରିତ ହୋଇ, ରାଜା ରାଜା ମଧ୍ୟରେ, ପ୍ରଜା ଭ୍ରାତୃ ମଧ୍ୟରେ ମିଳନ ଘଟିବ—ସ୍ବରାଜ୍ୟର ଭବିଷ୍ୟତ ମଙ୍ଗଳମୟ ହେବ—ମାତ୍ର ବଧିର ବିଧାତା କିଏ ଶୁଣାଇବ ? ଏ'ଅଙ୍ଗୁରୀର ଧ୍ରୁବ ଧାରଣାଥିଲା ( ସମସ୍ତଙ୍କର ମଧ୍ୟ ଏହିପରି ଧାରଣାଥିଲା ) ଯେ ଶ୍ବେତଙ୍ଗଙ୍କର ଯୁଦ୍ଧର ପ୍ରଧାନ କାରଣ, ଏ' ଅଙ୍ଗୁରୀ; ମାତ୍ର ଏ' ଧାରଣା ଯେ ସମ୍ପୂର୍ଣ୍ଣ ଅଳୀକ, ସ୍ବପ୍ନରେ ବୁଦ୍ଧା ତାହା କିଏ ଭାବିଥିଲା ! ତାଙ୍କର ଲେଶମାତ୍ର ଅନୁରାଗ ଏ' ଅଙ୍ଗୁରୀ ପ୍ରତି ନାହିଁ—ସେ ଏକଛତ୍ରକାର ସମ୍ରାଟ—ଯେମନ୍ତ କି ଯୁଦ୍ଧହିଁ ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ।

ସୁଭଦ୍ରା—ଏହା କି ସତ୍ୟ, ଗୌରବ ? (ଗୌରବ ମୁଖାବନତ କରିବା)
ଓଃ ହୋଃ !

ବାସୁ—ଶୁଣନ୍ତୁ, ମା ! "ସେ ଯେତେବେଳେ ମୋର କୌଣସି କଥାରେ ବିଶ୍ୱାସ ନକରି ମୋତେ ଅପଣଙ୍କ ନିକଟକୁ ପଠାଇ ଦେଲେ, ସେତେବେଳେ ମୋର ମନରେ ଯେଉଁ ଯାତନା ହେଲା ତାହା ବର୍ଣ୍ଣନାତୀତ—ତଥାପି ମନକୁ ଦୃଢ଼କରି ଭାବିଲି 'ମହତ୍ ଉଦ୍ଦେଶ୍ୟ ସାଧନ ନିମନ୍ତେ ସମୟେ ଯେତେବେଳେ ପ୍ରାଣବିସର୍ଜନ କରିବାକୁ ହୁଏ, ସେତେବେଳେ ଘୃଣ୍ୟ କଳଙ୍କିଣୀ ଅପବାଦରେ କି ଭୟ ? ବେଶ, ଫେରିଯିବି ପିତାଙ୍କ ଚରଣ ଧରି ଅନୁନୟ କରିକହିବି,—'ଯୁଦ୍ଧରୁ ନିବୃତ୍ତ ହୁଅନ୍ତୁ,—ମାତ୍ର ସେ ଯେବେ ଗୌରଗଙ୍ଗଙ୍କ କଥାରେ ମୋତେ କଳଙ୍କିଣୀ ମନେ କରି ବିଶ୍ୱାସ ନ କରନ୍ତି—କିମ୍ବା ଫେରିପାଇ ଦ୍ୱିଗୁଣ ହିଂସାରେ ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତି—ତା'ହେଲେ ଉପାୟ କ'ଣ ?'

ସୁବର୍ଣ୍ଣ—ଏ ଯେ ମନର କଥା ଲେଖିଛୁ ?—

ବାସୁ—"କୌଣସି ଉପାୟ ସ୍ଥିର କରି ନ ପାରି, ବାସୁଦେବ,ଯେ ମୋର ପ୍ରଧାନ ମନ୍ତ୍ରଦାତା, ତା'ଙ୍କ ସଙ୍ଗେ ପରାମର୍ଶ କରିବାର ମଧ୍ୟ କୌଣସି ସୁଯୋଗ ନ ପାଇ, ଏହାହିଁ ସ୍ଥିର କଲି—ଆତ୍ମ-ବିସର୍ଜନ ଏକମାତ୍ର ଉପାୟ—ସୁତରାଂ ଏହି ହୀରକ ଅଙ୍ଗୁରୀ ସାହାଯ୍ୟରେ ତାହାହିଁ ମୁଁ କରିଅଛି । ମୁଁ ଆତ୍ମହତ୍ୟା କରିନାହିଁ, ପିତଃ !—ଦେଶର ମଙ୍ଗଳ ନିମନ୍ତେ, ରଜା ଓ ପ୍ରଜାର ମଙ୍ଗଳ ନିମନ୍ତେ, ଆତ୍ମବିସର୍ଜନ କରିଛି ମାତ୍ର—ଏତଦ୍ଦ୍ୱାରା ନିଶ୍ଚୟ ଗୌରଗଙ୍ଗଦେବ ଆଉ ଯୁଦ୍ଧର କାରଣ ଦର୍ଶାଇ ପାରିବେ ନାହିଁ —ଆପଣ ମଧ୍ୟ ସେ ବିଷୟରେ ହତାଶ୍ୱାସ ହେବେ; ଆଉ

କେଶରୀ ବଂଶ ପ୍ରତି କଲଙ୍କ—ମୁଁ ଜୀବିତ ଥିବା ଦ୍ୱାରା ତାହା ଯଦି କେହି ମନେ କରନ୍ତେ—ଅନାୟାସେ ଅପସାରିତ ହେବ—

ସୁବର୍ଣ୍ଣ—ନନ୍ଦ । ନନ୍ଦ । ଓଃ ହୋଃ—

ବାସୁ—"ଅନ୍ତ ଗୋଟିଏ ବିଶେଷ ନିବେଦନ, ପିତଃ । ଏ' ଅଭାଗୀ ଗୈରିଙ୍ଗଙ୍କୁ ତା'ର ମନଃପ୍ରାଣ ଅର୍ପଣ କରି ଦେଇଅଛି—ତେଣୁ ଏତିକି ପ୍ରାର୍ଥନା, ତାଙ୍କୁ ଯେପରି ଶତ୍ରୁ ବୋଲି କେହି ଜ୍ଞାନ ନ କରନ୍ତି—ବରଂ ଜାମାତା ଓ ନିଜର ସନ୍ତାନ ବୋଲି ହୃଦୟରେ ସ୍ଥାନ ଦିଅନ୍ତି । ଏତିକି କଲେହିଁ ବାସୁ ଭାଇଙ୍କ ମନସ୍କାମନା ପୂର୍ଣ୍ଣ ହେବ-ଏ' ଅଭାଗୀର ଅତ୍ମା ମଧ୍ୟ ମୁକ୍ତିଲାଭ କରିପାରିବ ।"                                                                                                    ଅଭାଗୀ 'ନନ୍ଦୀ'

ସୁବର୍ଣ୍ଣ—ନନ୍ଦ ! ନନ୍ଦ । ମା । ମା ।  (ଛାତିକୁ ଅଲିଙ୍ଗନ କରିବା)

ସୁଭଦ୍ରା—ଶୁଣିଲ୍ଟ ସମସ୍ତ ଗୈରି । କାହା ପ୍ରତି ତୁ କି ବ୍ୟବହାର କରିଛୁ ? ଏ'ଯେ ସାକ୍ଷାତ୍ ଦେବୀ । ହାୟ, ହାୟ ପାଶବିକ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ କି ପାପ ଅର୍ଜନ କରିଛୁ, ପାପିଷ୍ଠ ।

ଗୈରି—( ସ୍ୱଗତ )  ପ୍ରକୃତରେ ସେଁ ଏ' ଦେବୀ । ମୁଁ କରିଛି କ'ଣ ?. ଯୁଦ୍ଧୋନ୍ମତ୍ତ ହୋଇ ସିନା ଏହି କୁକାର୍ଯ୍ୟ କଲି ? ଓଃ ହୋଃ ।(ପ୍ରକାଶ୍ୟେ) ମା । ମା । ଅଧମ ସନ୍ତାନକୁ କ୍ଷମାକର—ପିତଃ । ପିତଃ । ପାପିଷ୍ଠ ପ୍ରତି ଦଣ୍ଡବିଧାନ କରନ୍ତୁ ।

(ଅଣ୍ଠୁମାଡ଼ି ବସିବା )

ସୁବର୍ଣ୍ଣ—ମୋ'ର ମା'ର ହୁକୁମ—ମୁଁ ତୋତେ ଏହି ଦଣ୍ଡ ଦେଲି (ଟାଣିନେଇ ଅଲିଙ୍ଗନ କରିବା)

ବାସୁ—ଜୟ 'କେଶରୀ-ଗଙ୍ଗଙ୍କ ଜୟ' ।

ସୁଭଦ୍ରା—ଏ' ଯେ ହରଷେ ବିଷାଦ, ମନ୍ତ୍ରୀ ।

---

## ଚତୁର୍ଥ ଦୃଶ୍ୟ

[ ରାସ୍ତା—ଭକ୍ତଗଣଙ୍କ ଗୀତ ]

କାହାରେ ନିତ୍ୟମନ ଅନିତ୍ୟରେ ମଜ୍ଜ ହଜ୍ଜ କରୁ ଭାବନା ।
କିନ୍ତୁ ତୋର ରହିବ ନାହିଁ ରହୁ ନାହିଁଟି ସୁନାହାନା ।
ସ୍ତ୍ରୀ ପୁତ୍ର ପରିବାର ଶତ୍ରୁ ମିତ୍ର ଏକାକାର
ମାୟାର ମିଥ୍ୟା ଡୋରେ ଗୁନ୍ଥା ସିନା, ଶୂନ୍ୟରେ ମନ !
ତୁହି ମୁହିଁ ଅହଙ୍କାର ଧନଜନ ସମ୍ଭାର
କିନ୍ତୁ ସେ କାହାରି ନୁହେଁ, ଛାଡ଼ ଭାଇ ଛାର କାମନା,
ଆସିଛୁରେ ଏକା, ଯିବୁରେ ତୁ ଏକା
ଛାଡ଼ି ଦବଦଙ୍କା ସାଥିକର ବିଭୁ ଭାବନା—
ଏଡ଼ିବୁଟି ଯେବେ ଯମ ଯାତନା ॥

( ଭକ୍ତଗଣଙ୍କ ପ୍ରସ୍ଥାନ )

( ସୁବର୍ଣ୍ଣ ବେଶଭୂଷା ପ୍ରବେଶ କରି ଶୁଣୁଥିବା )

ସୁବର୍ଣ୍ଣ—ଏହି ଭକ୍ତଗଣ ଯାହା ଗାଇଗଲେ, ତାହା ମୁଁ ଅକ୍ଷରେ ଅକ୍ଷରେ ବର୍ତ୍ତମାନ ବେଶ୍ ଅନୁଭବକରୁଛି । ଏ'ସଂସାରମିଥ୍ୟା—ଏଠାକାର ସମସ୍ତ ମିଥ୍ୟା—ମୋରକନ୍ୟା—ମୋର ସ୍ତ୍ରୀ—ପ୍ରକୃତରେ କି ସେମାନେ ମୋର ? ଏତେ ସ୍ନେହ, ଏତେ ମମତା,ସେ ସବୁ କି ସତ୍ୟ ? ମାୟା, ମାୟା । ଶତ୍ରୁତା ମିଥ୍ୟା, ମିତ୍ରତା ମଧ୍ୟ ମିଥ୍ୟା । ଶତ୍ରୁର ସହିତ ମୋର ଯେପରି ସମ୍ବନ୍ଧ, ନନ୍ଦକାର ସହିତ ମଧ୍ୟ ସେହିପରି ସମ୍ବନ୍ଧ—କେହି କାହାର ନୁହନ୍ତି—କାହାର ସନ୍ତାନେ ମଧ୍ୟ କେହି ଅପେକ୍ଷା କରେ ନାହିଁ—ପ୍ରତ୍ୟେକେ ତା'ର କର୍ତ୍ତବ୍ୟ ଶେଷକରି, ଯେଉଁ ମହାର୍ଣ୍ଣବରୁ ଆସିଥାନ୍ତି

ସେହି ମହାର୍ଣ୍ଣବକୁ ଫେରିଯା'ନ୍ତ । ଏ'ସଂସାର କେତେବେ କ'ଣ ? —କେବଳ କର୍ତ୍ତବ୍ୟର କ୍ଷେତ୍ର ! ସୁଖ ଦୁଃଖ କଣ ?—କିଛିନୁହେଁ, ମନୁଷ୍ୟରକଳ୍ପନା ମାତ୍ର । ମନୁଷ୍ୟ ଯେତେବେଳ ପର୍ଯ୍ୟନ୍ତ ଜ୍ଞାନ ବଶତଃ ହେଉ ବା ଅଜ୍ଞାନ ବଶତଃ ହେଉ,ନିଜର କର୍ତ୍ତବ୍ୟ କରିଯାଉଥାଏ, ସେତେବେଳ ପର୍ଯ୍ୟନ୍ତ ତାର ମନ ନିର୍ବିକାର ରହିଥାଏ—ଏ'ପରି କଳ୍ପନା ଆଦୌ ସେଠାରେ ସ୍ଥାନ ପାଏ ନାହିଁ । ନନ୍ଦଲା ଓ ବାସୁଦେବଙ୍କ ଦୃଷ୍ଟାନ୍ତ ଦେଖ —ଅମ୍ଳାନ ବଦନରେ, ନିର୍ବିକାର ଚିତ୍ତରେ ଉଭୟେ କାପର ସମ୍ପଦ ଓ ବିପଦକୁ ସମାନ ଭାବେ ଆଲିଙ୍ଗନ କରିରହିଛନ୍ତି— ଉଭୟଙ୍କର ଏକମାତ୍ର ଧ୍ୟାନ 'ଶରୀରଂ ବା ପାତୟେତ୍,କାର୍ଯ୍ୟଂବା ସାଧୟେତ୍' ! କର୍ତ୍ତବ୍ୟ ! କର୍ତ୍ତବ୍ୟ ! ତୁହି ଜୀବର ଏକମାତ୍ର ଅଦ୍ୱିଧ ଦେବତା—ଏହି ମାୟା ସଂସାରରେ ମୁକ୍ତିଦାତା । ମା ମା ! ମୋର ଚକ୍ଷୁ ଆଜ ଉନ୍ମିଳିତ କରି ଦେଇଛୁ । ବର୍ତ୍ତମାନ ବେଶ ବୁଝି ପାରୁଛି ମା !—ତୋର ସେହି କଥା, 'ଆପଣ ଅତିରିକ୍ତ ସ୍ନେହମୋହରେ ଅନ୍ଧ-ଜ୍ଞାନ-ଶୂନ୍ୟ ହୋଇଛନ୍ତି'— ହାୟ । ସେତେବେଳେ ଯଦି ମୋର କର୍ତ୍ତବ୍ୟ ଥାନ୍ତା । ଯାଉ-ଗୁଲ୍, ମନ । ଏ ବୃଦ୍ଧ ବୟସରେ ତୋ'ର ଯାହା କର୍ତ୍ତବ୍ୟ, ତାହାହିଁ ପାଳନ କରିବୁ—'ହରିବୋଲ୍' 'ହରିବୋଲ୍'

( ପ୍ରସ୍ଥାନ )

( ବାସୁଦେବର ପ୍ରବେଶ )

ବାସୁ—ମହାରାଜ କାହିଁ ଗଲେ ? ଗୈରିଗଙ୍କୁ ଗୃହ୍ୟାର୍ପଣ କରିବା ପରେ ସେ କାପର ଉଦାସୀନ ଜଣାଯାଉଥିଲେ -ସେ କ'ଣ ସଂସାର-ତ୍ୟାଗୀ ହେଲେ ? ହେଲେ ଯଦି, ମୋତେ କାହିଁକି ରଖିଗଲେ-?

ସୁବର୍ଣ୍ଣ—( ପ୍ରବେଶ କରି ) ପ୍ରୟୋଜନ ଅଛି ଦେବାଳ ।

ବାସୁ—ଏହି ଯେ ମହାରାଜ !—ମହାରାଜ ! ମହାରାଜ !

ସୁବର୍ଣ୍ଣ—ବାସୁଦେବ ! ମୋର କର୍ତ୍ତବ୍ୟ କ'ଣ ମୁଁ ପାଳନ କରିବି ନାହିଁ ?

ବାସୁ—ମୋତେ ତେବେ ସଙ୍ଗରେ ନେଉ ନାହାନ୍ତି କାହିଁକି ? ମୁଁ ମଧ୍ୟ ବୃଦ୍ଧ ହୋଇଛି ।

ସୁବର୍ଣ୍ଣ—ଗୈରିକ ନିତାନ୍ତ ଶିଶୁ—ଅଦ୍ୟାପି ରାଜକାର୍ଯ୍ୟ ବିଷୟରେ ଅପରିପକ୍ୱ—ସୁତରାଂ ରାଜ୍ୟର ମଙ୍ଗଳ ସକାଶେ ତୁମ୍ଭଙ୍କୁ ଏ' ସଂସାର କ୍ଷେତ୍ରରେ କିଛୁଦିନ ରହିବାକୁ ହେବ—ଆଉ ମୁଁ ଅପେକ୍ଷା କରି ପାରୁନାହିଁ—ଅନ୍ୟ-ଚିନ୍ତା ମନରେ ସ୍ଥାନଦେଇ, ପାରୁନାହିଁ—'ହରିବୋଲ୍'—'ହରିବୋଲ୍'—

( ବେଗେ ପ୍ରସ୍ଥାନ )

ବାସୁ—ମହାରାଜ ! ମହାରାଜ ! (ଅନୁଧାବନ)

---

## ପଞ୍ଚମ ଦୃଶ୍ୟ ।

[ ନନ୍ଦିତାର ସମାଧି କ୍ଷେତ୍ର—ଗ୍ରେବଟଙ୍କ ଏକାକୀ ]

ଗ୍ରେବ—ପ୍ରିୟେ ! କ୍ଷମା କି କରିବ ନାହିଁ ? ତୁମେ ଯେ ସ୍ୱେଚ୍ଛାରେ ଏ' ଧର୍ମ ଅକିଞ୍ଚନକୁ ବରଣ କରିଛ ? ଦେଖ ପ୍ରିୟେ ! ମୋର ଆଜ ସେ ଯୁଦ୍ଧ ପରିଚ୍ଛଦ ନାହିଁ—ସେ ଘୃଣ୍ୟ ଅସ୍ତ୍ର ଶସ୍ତ୍ର ନାହିଁ—ସେ ନାରକୀୟ ପ୍ରବୃତ୍ତି ମଧ୍ୟ ନାହିଁ । ମୁଁ ସମସ୍ତ ବିସର୍ଜନ କରି ଆସିଛି—ଅଜୀବନ ପାଇଁ ସମସ୍ତ ତ୍ୟାଗ କରି ଆସିଛି—କେବଳ ଅନୁଗ୍ରହ ପାଇବା ବୋଲି—ତୁମର ସୁଧାମୟ ଆଲିଙ୍ଗନ ଲାଭ କରିବ ବୋଲି । ମୋର ପୂର୍ବ ବାସନା, ଅଧୁନା ପ୍ରେମ ବାସନାରେ ପରିଣତ ହୋଇଛି—ମୋର ବିଜୟ ଲାଳସା, ଅଧୁନା ପରାଜୟ ଲାଳସାରେ ପରିଣତ ହୋଇଛି ! କୁହ, ପ୍ରିୟେ ! ଆଜ ତୁମର ମୋ ପ୍ରତି କ୍ରୋଧ ନାହିଁତ ? ସେ ଦିନ ଗର୍ବଭରେ ଯେଉଁ କଥା କହିଥିଲି, ତାହା ପାସୋରି ଯାଇଛକି ?—କୁହ ପ୍ରିୟେ ! ଏ'ପରି ପାଷାଣୀ ହୋଇ ରହିଛ କାହିଁକି ?—ଅଭିମାନିନି ! ( ଚୁମ୍ବନ କରିବା )

( ଶାରଦାର ପ୍ରବେଶ )

ଶାରଦା—ମହାରାଜ ! ମହାରାଜ ! ଏ କ'ଣ କରୁଛନ୍ତି ? ଏ' ଯେ ପ୍ରସ୍ତରଖଣ୍ଡ !

ଗ୍ରେବ—ପ୍ରସ୍ତରଖଣ୍ଡ ? ହାଃ, ହାଃ, ହାଃ ! ଏ ଯେ ଘନୀଭୂତ ପ୍ରେମରାଶି । ଦେଖ, ଦେଖ, ଶାରଦା ! ମୋର ଆଲିଙ୍ଗନରେ ତାହା କୋମଳ ହୋଇଛି କି ନାହିଁ—ମୋର ଚୁମ୍ବନରେ ତାହା ତରଳି ଯାଇଛି କି ନାହିଁ ।

ଶାରଦା—ଓଃ, ସତ୍ୟ, ସତ୍ୟ ? ମର୍ତ୍ତ୍ୟକୁ ସ୍ୱର୍ଗକର ପୁଣି ସ୍ୱର୍ଗକୁ ଗୁଲିଗଲି କାହିଁକି ? ( ଫୁଲହାର ପିନ୍ଧାଇ ଦେବା )

( ବୀରେନ୍ଦ୍ରର ପ୍ରବେଶ )

ବୀରେନ୍ଦ୍ର—ଜ୍ଞାନଚକ୍ଷୁ ଖୋଲିବାପରେ ବିଶ୍ୱକର୍ମୀଙ୍କ ଦର୍ଶନ ଲାଭ କରିବା କି ସମ୍ଭବ, ପ୍ରିୟେ ? ( ବାସୁଦେବଙ୍କର ପ୍ରବେଶ )

ବାସୁ—ଏହିତ ମହତ୍ତ୍ୱ । ନିଷ୍କାମ କର୍ମ ଯେ ଜଗତରେ ସାର କର୍ମ ।

( ସୁଭଦ୍ରାର ପ୍ରବେଶ )

ସୁଭଦ୍ରା—ସେହିହେତୁ ଅଜ ତୁମ୍ଭେ ଧନ୍ୟ, ବାସୁଦେବ !

ବାସୁ—ଧନ୍ୟ ଏହି ଦେବୀ, ନନ୍ଦିକା । ସମସ୍ତେ ସମସ୍ୱରରେ କୁହ ଥରେ, 'ଜୟ ନନ୍ଦିକା ଦେବୀଙ୍କର ଜୟ' । 'ଜୟ ନନ୍ଦିକା ଦେବୀଙ୍କର ଜୟ ।'

[ଅପ୍ସରାମାନଙ୍କର ଉର୍ଦ୍ଧ୍ବ ଦେଶୁଁ ପୁଷ୍ପବୃଷ୍ଟି କରୁ କରୁ ଗୀତ ବୋଲିବା]

ଗୀତ— ଧୀରେ ବହ ସମୀରଣ

ତାପିତ-ହୃଦୟେ ଯେମା ନିଦ୍ରାରେ ମଗନ ।
ଚନ୍ଦ୍ରମା ଶୀତଳ-କରେ ତାପଜ୍ୱାଳା ପିଙ୍ଗଳରେ
ପ୍ରହରୀ ତାରକା ରଖ ସମାଧି ଭବନ ।
ଜଗତ ଜନଙ୍କ ହିତେ ଉଦିତ ବାରି ସମାନେ
ଯେ ପ୍ରାଣ କାନ୍ଦେ ନିରତେ ପ୍ରଫୁଲ୍ଲ ଆନନ ।
ଶ୍ୟାମଳିତ ଭର୍ବର ସ୍ନେହସ୍ରୀତ ସୁଚ୍ଛାଧର
ସେ ହୃଦୟ ଅନିବାର ପ୍ରବାହିତ ପ୍ରଭାବର
ଏ ସମାଧି, ମହାନନ୍ଦୀ । ଧର ବକ୍ଷେ ଏ ରତନ ।
( ସମସ୍ତେ ଅବନତ ହେବା )

[ ଯବନିକା ପତନ ]

ଓଁ ଶାନ୍ତିଃ । ଶାନ୍ତିଃ । ଶାନ୍ତି ।

